# ଅଶ୍ୱଶାସ୍ତ୍ର ।

ପୂର୍ବାର୍ଦ୍ଧ—ଲକ୍ଷଣ ଏବଂ ଶୁଭାଶୁଭ ଜ୍ଞାନ

ଓ

ଉତ୍ତରାର୍ଦ୍ଧ—ଚିକିତ୍ସା ଏବଂ ରୋଗ ନିଦାନ ।

ଶ୍ରୀ ବୀରବିକ୍ରମ ଦେବ ମହାରାଜାଙ୍କ

ଦ୍ୱାରା

ସଙ୍କଳିତ ଓ ପ୍ରକାଶିତ ।

ପ୍ରଥମ ସଂସ୍କରଣ ।

ଖଡ଼ିଆଳଗଡ଼ ଦୁର୍ଗ ।

—:o:—

PRINTED BY V. KAR.
THE UTKAL SAHITYA PRESS.
CUTTACK.
1910.

ମୂଲ୍ୟ ୧ ୦ ୵

# ଉ ତ୍ସ ର୍ଗ ।

ସଦ୍‌ଗୁଣାଧାର ଶ୍ରୀ ଶ୍ରୀ ରାଜା ଦ୍ୱିଜକୃଷ୍ଣ ଗଣେଶ୍ୱର ପାଲ
ଲହଡ଼ାଧୀଶ୍ୱର ମହୋଦୟ ଶ୍ରୀକରକମଳେଷୁ ।

ପ୍ରିୟଦର୍ଶନ !

ସ୍ୱର୍ଗୀୟ କବିବର ରାଧାନାଥ ଯେଉଁ ହୃଦୟକୁ ଉତ୍କଳର ସର୍ବୋଚ୍ଚ ସ୍ଥାନ "ମାଲ୍ୟଗିରି"ର ଉଚ୍ଚତା ସହିତ ତୁଳନା କରିଥିଲେ, ଅଜ ସେହି ହୃଦୟ ସମୀପରେ ଏହି ପୁସ୍ତକ ଖଣ୍ଡିକ ସାଦରେ ଉପାୟନୀକୃତ ହେଲା । ଗ୍ରହଣାନୁମତି ହେଲେ ଅପ୍ୟାୟିତ ହେବ । ଇତି ।

ଖଡ଼ିଆଳିସ୍ ରାଜଧାନୀ
୨୦।୩।୧୯୧୦

ସ୍ନେହମମତାବଦ୍ଧ
ଶ୍ରୀ ବୀରବିକ୍ରମ ଦେବ ।

# ଭୂମିକା ।

ଆମ୍ଭର ଉତ୍କଳରେ ଅଶ୍ୱଶାସ୍ତ୍ରର ଅଭାବ ଥିବାରୁ ଅନେକ ବ୍ୟକ୍ତିମାନଙ୍କୁ ସମସ୍ତ ସମୟରେ ଅଶ୍ୱମାନଙ୍କର ଲକ୍ଷଣ ଏବଂ ରୋଗନିଦାନ ଓ ଚିକିତ୍ସା କରିବାରେ ଅନ୍ୟର ମୁଖାପେକ୍ଷୀ ହେବାକୁ ପଡୁଥିଲା । ଏଣୁ ସେହି ସମସ୍ତ ତ୍ରୁଟି ନିରାକରଣାର୍ଥ ଅନେକ ହସ୍ତଲିଖିତ ପୁରାକାଳର ତାଳପତ୍ର ପୋଥିରୁ ଓ ହିନ୍ଦୀ, ଫାରସୀ ମୁଦ୍ରିତ ଗ୍ରନ୍ଥମାନଙ୍କରୁ ସଂଗୃହୀତ କରି ପ୍ରକାଶ କଲି । ଅଶ୍ୱରକ୍ଷକଗଣ ଥରେ ମାତ୍ର ପାଠ କରି ଦେଖିଲେ ମୋର ଶ୍ରମ ସଫଳ ମନେ କରିବି । ଇତି । ତା ୩ । ୬ । ୧୯୧୦

ପ୍ରକାଶକ ।

# ଅଶ୍ୱଶାସ୍ତ୍ର ।

## ପୂର୍ବାର୍ଦ୍ଧ ।

### ଲକ୍ଷଣ ଏବଂ ଶୁଭାଶୁଭଜ୍ଞାନ ।

——:o:——

ଓଁ

ଗ୍ରନ୍ଥାରମ୍ଭେ ମଙ୍ଗଳାଚରଣଂ ।

ମୁକ୍ତାକୁନ୍ଦେନ୍ଦୁଗୌରାଂ ମଣିମୟମୁକୁଟାଂ ରତ୍ନତାଟଙ୍କଯୁକ୍ତାଂ
ଅକ୍ଷସ୍ରକ୍ ପୁଷ୍ପହସ୍ତାମଭୟବରକରାଂ ଚନ୍ଦ୍ରଚୂଡାଂ ତ୍ରିନେତ୍ରାଂ ।
ନାନାଲଙ୍କାରଯୁକ୍ତାଂ ସୁରବରମୁକୁଟୈର୍ଦ୍ଦ୍ୟୋତିତାଃ ସ୍ୱର୍ଣ୍ଣପୀଠାଂ
ସାନନ୍ଦାଂ ସୁପ୍ରସନ୍ନାଂ ତ୍ରିଭୁବନଜନନୀଂ ଚେତସା ଚିନ୍ତୟାମି ।

ଅଥାଶ୍ୱବର୍ଣ୍ଣମାହ ।

ଶୁକ୍ଳଶୋଣୌ ହରିତ୍ କୃଷ୍ଣୌ ମୂଳବର୍ଣ୍ଣଚତୁଷ୍ଟୟଂ ।
ଶେଷାସ୍ତୁ ସଙ୍କରଶ୍ଚୈଷାଂ ସର୍ବେ ବର୍ଣ୍ଣାଶ୍ଚନେକଧାଃ । ।

ଶୁକ୍ଳ, ରକ୍ତ, ହରିତ୍ ଏବଂ କୃଷ୍ଣ ଏହି ଚାରି ଗୋଟି ରଙ୍ଗ ପ୍ରସିଦ୍ଧ । ଏତଦ୍‌ଭିନ୍ନ ରଙ୍ଗମାନଙ୍କୁ ସଙ୍କର ଅର୍ଥାତ୍ ମିଶ୍ରିତ ରଙ୍ଗ କହନ୍ତି ।

ହାର କ୍ଷୀର ଶଶାଙ୍କ ଶଙ୍ଖ ରଜତ ପ୍ରାଲେୟ ବର୍ଣ୍ଣାଃ ସିତାଃ ।
ସାନ୍ଦ୍ରାଲକ୍ତକ ଦାଡିମି କୁସୁମବତ୍ ରକ୍ତାଶ୍ଚ ଶୋଣାସ୍ତୁତାଃ ।
କୃଷ୍ଣାଶ୍ଚାଞ୍ଜନକୋକିଳାମ୍ବୁଦନିଭ ଭୃଙ୍ଗାଙ୍ଗନାଙ୍ଗୋପମା ।
ହେମାଭାଶ୍ଚ ହୟାଃ ପ୍ରଦୀପ୍ତହୁତଭୁକ୍ ଗୋରୋଚନାସନ୍ନିଭାଃ ।

ହାର, କ୍ଷୀର, ଚନ୍ଦ୍ର, ଶଙ୍ଖ, ରୌପ୍ୟ, ହିମ ସଦୃଶ ଶୁକ୍ଳରଙ୍ଗ; ଓଦା ଅଲତା, ଦାଡ଼ିମ୍ବପୁଷ୍ପ, ରକ୍ତ ସଦୃଶ ଶୋଣ ( ଅର୍ଥାତ୍ ) ରକ୍ତବର୍ଣ୍ଣ; ଅଞ୍ଜନ, କୋକିଳ, ଅମ୍ବୁଦ, ଭୃଙ୍ଗୀ ସଦୃଶ କୃଷ୍ଣବର୍ଣ୍ଣ; ହେମ, ପ୍ରଜ୍ୱଳିତ ବହ୍ନି, ଗୋରୋଚନ ସଦୃଶ ହରିତ୍‌ବର୍ଣ୍ଣ । ଏତେ ବର୍ଣ୍ଣର ଅଶ୍ୱମାନେ ଥାଆନ୍ତି ।

## ଅଥ ତ୍ରିମଙ୍ଗଳଲକ୍ଷଣମାହ ।

ପୂର୍ବୌ ବା ପଶ୍ଚିମୌବାପି ଯସ୍ୟ ପାଦୌ ହରତ୍ୱଶିତୌ ।
ହରତ୍ ପୁଣ୍ଡ୍ରଶିତୋବାପି ସ ବିଜ୍ଞେୟଂ ତ୍ରିମଙ୍ଗଳଂ ।

ଅଗ୍ରର ଦୁଇ ପାଦ ବା ପଛର ଦୁଇ ପାଦ ଶୁକ୍ଳ ଓ ଲଲାଟରେ ଶ୍ୱେତ ପୁଣ୍ଡ୍ର ଥିଲେ ସେହି ଅଶ୍ୱକୁ ତ୍ରିମଙ୍ଗଳ କହାଯାଏ । ଅଥବା ଏହି ତିନି ସ୍ଥାନରେ ପିଙ୍ଗଳ ବର୍ଣ୍ଣ ଥିଲେ ମଧ୍ୟ ତ୍ରିମଙ୍ଗଳ ବୋଲି ଜାଣିବ ।

## ଅଥ ପଞ୍ଚଭଦ୍ରଲକ୍ଷଣମାହ ।

ଯସ୍ୟ ପାଦାଃ ଶିତାଃ ସର୍ବେ ମୁଖଞ୍ଚ ଶଶିସନ୍ନିଭଂ ।
ପଞ୍ଚଭଦ୍ରଃ ସ ବିଜ୍ଞେୟ ଭର୍ତ୍ତୁସର୍ବାର୍ଥକାମଦଃ ।

ଯେଉଁ ଅଶ୍ୱର ଚାରି ନଳଗୋଡ଼ ଶୁକ୍ଳ ଏବଂ ମୁଖରେ ଶୁକ୍ଳ ଥାଏ, ତାହାକୁ ପଞ୍ଚଭଦ୍ର ଅର୍ଥାତ୍ ପଞ୍ଚକଲ୍ୟାଣ କହନ୍ତି । ଏତାଦୃଶ ଅଶ୍ୱ ସ୍ୱାମିର ସମସ୍ତ କାମନା ସିଦ୍ଧ କରି ପାରେ ।

## ଅଥ ଅଷ୍ଟମଙ୍ଗଳଲକ୍ଷଣମାହ ।

ଅଷ୍ଟୌ ଶିତା ଯସ୍ୟ ଭବନ୍ତି ବାଜିନଃ ପୃଷ୍ଠଶ୍ଚ ବକ୍ଷଶ୍ଚ ଶିରୋମୁଖଂଖଫଂ ।
ଅଶୌରୁଗଙ୍ଗ ହୟମଷ୍ଟ ମଙ୍ଗଳଂ ଭର୍ତ୍ତୁ ଯଶୋରାଜ୍ୟ ସୁଖଂ ପ୍ରଦଂସ୍ୟାତ୍ ।

ଯେଉଁ ଅଶ୍ୱର ପୃଷ୍ଠ, ବକ୍ଷ, ଶିର, ମୁଖ, ଲାଙ୍ଗୁଳ ଶୁକ୍ଳ ଥାଏ, ତାହାକୁ ଅଷ୍ଟମଙ୍ଗଳ କହନ୍ତି ।

## ଅଥାନ୍ୟପ୍ରକାରେଣମାହ ।

ଯସ୍ୟ ପାଦାଃ ଶିତାଃ ସର୍ବେ ପୁଚ୍ଛେ ବକ୍ଷୋ ମୁଖଂ ତଥା ।
ମୂର୍ଦ୍ଧଯାଶ୍ଚ ଶିତା ଯସ୍ୟ ତଂ ବଦ୍ୟଂ ଅଷ୍ଟମଙ୍ଗଳଂ ।

ଯେଉଁ ଅଶ୍ୱର ଚାରି ପାଦରେ, ପୁଚ୍ଛରେ, ବକ୍ଷରେ, ମୁଖରେ ଏବଂ ଦୁଇ କର୍ଣ୍ଣ ମଧ୍ୟସ୍ଥ କେଶରେ ଅର୍ଥାତ୍ ମସ୍ତକ କେଶ ଶୁକ୍ଳ ଥାଏ, ତାକୁ

ମଧ୍ୟ ଅଷ୍ଟମଙ୍ଗଳ କହାଯାଏ । ଏପରି ଅଶ୍ୱ ଯେଉଁ ଦେଶରେ ଥାଏ ସେହି ଦେଶର ଓ ସ୍ୱାମିର ମଙ୍ଗଳ ସାଧନ କରାଏ ।

ଯୁଗଭେଦେ ବର୍ଣ୍ଣଭେଦମାହ ।

ଶ୍ୱେତଂ କୃତଯୁଗେ ବାଜି ତ୍ରେତାୟାଂ ଶୋଣ ଏବ ଚ ।
ଦ୍ୱାପରେ ତୁ ହରିଦ୍ୱର୍ଣ୍ଣଃ କଲୌ କୃଷ୍ଣଃ ପ୍ରଶସ୍ୟତେ ।

ସତ୍ୟରେ ଶୁକ୍ଳ, ତ୍ରେତାରେ ରକ୍ତ, ଦ୍ୱାପରରେ ହରିତ୍ ଏବଂ କଳିରେ କୃଷ୍ଣ ବର୍ଣ୍ଣର ଅଶ୍ୱ ପ୍ରଶସ୍ତ । ଏପରି ଅଶ୍ୱଦ୍ୱାରା ସ୍ୱାମିର ମଙ୍ଗଳ ସାଧନ ହୁଏ ।

ଜାତିଭେଦମାହ ।

ଶ୍ୱେତବର୍ଣ୍ଣୋ ଦ୍ୱିଜୋ ବାଜି ପୀତଃ କ୍ଷତ୍ରି ପ୍ରକୀର୍ତ୍ତିତଃ ।
ହରିତ୍ ବୈଶ୍ୟ ସୁତା ଜ୍ଞେୟା କୃଷ୍ଣ ଶୂଦ୍ରସୁତା ଦୃଶଃ ।

ବ୍ରହ୍ମଜାତି ଶୁକ୍ଳ, ରକ୍ତ କ୍ଷତ୍ରିୟ, ହରିତ୍ ବୈଶ୍ୟ ଏବଂ କୃଷ୍ଣବର୍ଣ୍ଣ ଶୂଦ୍ରଜାତି ।

ଅଥ ବ୍ରହ୍ମଜାତିଲକ୍ଷଣମାହ ।

ଶ୍ରୀମାନ୍ ଶଙ୍ଖାରଗନ୍ଧ କଠିନଘନଖୁରଃ ସ୍ନିଗ୍ଧବର୍ଣ୍ଣଃ ସୁଶୀଳଃ ।
ପ୍ରଜ୍ଞାବାନ୍ ଦେବସତ୍ତ୍ୱଂ ପ୍ରବଳ ଯବଯୁତୋ ଧାବତେ ହ୍ୱା ଗୁଣାଢ୍ୟଃ ।
ଧୀରେ ଗମ୍ଭୀରହ୍ରେଷ ସତତବଗତଭୀଃ ପାଦ୍ୟସାହାଂରକ୍ଲେଳ ।
କ୍ଷାନ୍ତଃ କଲ୍ୟାଣ କୃଷ୍ଣ ସ ଭବତି ତୁରଙ୍ଗୋ ବ୍ରାହ୍ମଣେ ଯୁକ୍ତ ଏଷଃ ।

ଲକ୍ଷଣଯୁକ୍ତ, ସୌରଭଯୁକ୍ତ, କଠିଣ ଏବଂ ଛିଦ୍ରରହିତ ଖୁର, ମସୃଣ ଶରୀର, ସାଧୁ ସ୍ୱଭାବ, ବଳବାନ୍, ଶୀଘ୍ରଗାମୀ, ଭରବାହକ ଶକ୍ତି, ଗମ୍ଭୀର ହ୍ରେଷା, ସହିଷ୍ଣୁ, କ୍ଷୀରଯୁକ୍ତ ତୃଣ ଭୋଜନେଚ୍ଛା, ବ୍ରହ୍ମଜାତି ଅଶ୍ୱମାନଙ୍କର ଲକ୍ଷଣ ହୁଏ ।

## ଅଥ କ୍ଷତ୍ରିୟଜାତିଲକ୍ଷଣମାହ ।

କ୍ରୂରସ୍ତୀକ୍ଷ୍ଣୋ ବଳବାଂସ୍ତଥାପି ସ୍ନିଗ୍ଧ ଗମ୍ଭୀର ହ୍ରେଷଃ ।
ଗ୍ରୀବାଦୀର୍ଘୋବସ୍ତ୍ରବଶୁଭବାନ୍ ଶକ୍ରସତ୍ତ୍ୱୋଽଭିମାନୀ ।
ଶୁଦ୍ଧାହାରଃ ପଥଲଘୁଗତିର୍ଚ୍ଛିଦ୍ରଲକ୍ଷ୍ମା ସୁଗନ୍ଧ ।
ଲଘ୍ୱାହାରୋ ଭବତି ତୁରଗୋ କ୍ଷତ୍ରିୟୋରାଜବାହ ॥

କ୍ରୂରତା, ତୀକ୍ଷ୍ଣତ୍ୱ, ନିର୍ଭୟତା, ମସୃଣଶରୀର, ଗମ୍ଭୀରହ୍ରେଷା, ଦୀର୍ଘଗ୍ରୀବା, ଶୁଭଲକ୍ଷଣଯୁକ୍ତ, ଇନ୍ଦ୍ରତୁଲ୍ୟାଭିମାନୀ, ପଥଷ୍କାର ଘୋଡ଼ନେ ଧୃଷ୍ଟା, ସୌରଭଯୁକ୍ତ, ଶବ୍ଦହୀନ ପାଦନିକ୍ଷେପକାରୀ, ଲଘ୍ୱାହାରୀ, କ୍ଷତ୍ରିୟଜାତି ଅଶ୍ୱର ଲକ୍ଷଣ । ଏପରି ଅଶ୍ୱ ରାଜବାହନର ଯୋଗ୍ୟ ।

## ବୈଶ୍ୟଜାତିଲକ୍ଷଣମାହ ।

ହାରପ୍ରିୟଃ ପିଙ୍ଗଳନେତ୍ରକାନ୍ତ
ତୃଷାକ୍ଷୁଧାହାରସହାଭିମାନୀ ।
ଧୀର ଶୁଚିମାନ୍ ବଳର୍ବିଯୁକ୍ତ
ସୁଗନ୍ଧରଶ୍ମିଃ ଖଳୁ ବୈଶ୍ୟଜାତିଃ ।

ଅଭରଣପ୍ରିୟ, ପିଙ୍ଗଳନେତ୍ର, କ୍ଷୁଧା ତୃଷା ସହିଷ୍ଣୁତା, ଧୀରତା, ଶୁଚିବନ୍ତତା, ମର୍ଦ୍ଦନେ ଦୃଢ଼ା, ପରିପୁଷ୍ଟ ଶରୀରଧାରୀ, ସୌରଭଯୁକ୍ତ ବୈଶ୍ୟଜାତି ଅଶ୍ୱର ଲକ୍ଷଣ ।

## ଶୂଦ୍ର ଲକ୍ଷଣମାହ ।

କ୍ରୂରେକ୍ଷଣଃ କ୍ରୂରମନାସ୍ତୁ କ୍ଷୁଦ୍ରଃ,
କ୍ଷୁଦ୍ରୋପହାରଃ ଖଳୁ ପୂତିଗନ୍ଧ ।
କ୍ରୋଧୀ ଦୁରାରାଧନଚଞ୍ଚଳବୃତ୍ତି—
ର୍ମୂଢ଼ବୁଦ୍ଧିଃ ଖଳୁ ଶୂଦ୍ରଜାତିଃ ।

ଚକ୍ଷୁଷିକାଦୃଷ୍ଟିକାରତା, ହିଂସ୍ରକତା, କ୍ଷୁଦ୍ରଶରୀରଧାରୀ, ଘୃଣା-

ଯୁକ୍ତ ଶ୍ୱେତକ ଚୂହା, ଦୁର୍ଗନ୍ଧଯୁକ୍ତ, ମୂର୍ଖସ୍ୱଭାବ କ୍ଷୁଦ୍ରଜାତ ଅଶ୍ୱର ଲକ୍ଷଣ ।

ଅଥ ଶୁଭାଶୁଭ ଲକ୍ଷଣମାହ । ପ୍ରଥମତଃ ଶୃଙ୍ଗିଲକ୍ଷଣଂ ।
ଗୋଶୃଙ୍ଗାଗ୍ରନିଭଂ ଛମ୍ମା କଶୀଷ୍ଟ୍ରୋପମଂ ଭବେତ୍ ।
ଚର୍ମକାଲିଚ୍ଛଧକାଶଂ ଅମ୍ର ସ୍ଥୀର ମନୋହରଂ ।
ଜମ୍ବୁ ଖର୍ଜୂର ରୂପଞ୍ଚ ଜୋଡେତ୍ ଗୋଲହୃକାକୃତଃ ।
ଜସ୍ୱଙ୍ଗ ଷୂପ୍ରମାଣମ୍ୟା ଲମ୍ବପିଷ୍ଟା ଭୃକ୍ଷଂ ପୁନଃ ।
ଲମ୍ବଞ୍ଚୈବ ଚର୍ମଶୃଙ୍ଗ ଲଲାଟେ ବା ଶଠାନ୍ତରେ ।
ଶୀର୍ଷେ ଚ କୁଚମଧ୍ୟେ ବା ବର୍ତ୍ତତେ ଯସ୍ୟ ବାଜିନଃ ।
ସ ଶୃଙ୍ଗୀ କଥ୍ୟତେ ଧୀରୈଃ ସ୍ୱସ୍ୱାମ୍ୟଂ ସ୍ୱସ୍ୟ ନାଶ୍ୟକଂ ।
ହନ୍ତି ସ୍ୱଦେଶ ତତସ୍ମାତ୍ ପରସ୍ୱେଷ୍ଟ୍ର ନିବାସୟେତ୍ ।

ଗୋଶୃଙ୍ଗାଗ୍ରଭାଗଦୃଶ୍ୟ, କଶୀର୍ଷକୁଟଦୃଶ୍ୟ, ଚର୍ମ ସମ୍ବନ୍ଧୀୟ ମଶକ, ଦୃଶ୍ୟ, ଅମ୍ରାସ୍ଥି ଦୃଶ୍ୟ, ଜମ୍ବୁବତ୍ ଖର୍ଜୁର ଦୃଶ୍ୟ, ଲମ୍ବ ବୀଜ ସଦୃଶ, ବୃଦ୍ଧାଙ୍ଗୁଳ ଅଗ୍ରଭାଗଦୃଶ୍ୟ, ଚର୍ମ ଶୃଙ୍ଗ ଯଦି ଲଲାଟେ-ଗ୍ରୀବାସ୍ୱାଂ, ଶିରେ କୁଚ ମଧ୍ୟେ ବାଜିନଃ ବର୍ତ୍ତନ୍ତେ, ସ ଶୃଙ୍ଗୀ ଇତି, ବୁଧାଃ କଥ୍ୟନ୍ତି, ଏତାଦୃଶ ଶୃଙ୍ଗିଯୁକ୍ତାଶ୍ୱ, ଯତ୍ର ଦେଶେ ବର୍ତ୍ତନ୍ତି, ସ ଦେଶ ଏବଂ ନିଜ ପ୍ରଭୁସ୍ୟ ଅନିଷ୍ଟକାରୀ ଭବନ୍ତି । ଏତାଦୃଶ୍ୟାଶ୍ୱ ଦୂରତଃ ବର୍ଜନୀୟଃ । ଅର୍ଥାତ୍ ଉପରୋକ୍ତ ଦୋଷଯୁକ୍ତ ଥିବାର ଅଶ୍ୱ ରଖିବାର ଯୋଗ୍ୟ ନୁହେଁ ।

ଅଥ ଶୁଭ ଲକ୍ଷଣମାହ ।

ଚନ୍ଦ୍ରାର୍ଦ୍ଧଲକ୍ଷଣଂ ।

ଲଲାଟେ ଯୁଗଳାବର୍ତ୍ତୌ ଚନ୍ଦ୍ରାର୍କୌ ସମ୍ପ୍ରକୀର୍ତ୍ତିତୌ ।
ଯୁଗ୍ମାବର୍ତ୍ତୌ ତଥା ଶୀର୍ଷେ ସର୍ବଦା ଚ ଶୁଭଂ ଭବେତ୍ ।

ଲଲାଟେ ଅବା ଶିରରେ ଦୁଇ ଗୋଟି ଆବର୍ତ୍ତ ଥିଲେ ସେହି

ଆବର୍ତ୍ତକୁ ଚନ୍ଦ୍ରସୂର୍ଯ୍ୟ ବୋଲାଯାଏ । ଏତାଦୃଶ ଅଶ୍ୱ ସର୍ବଦା ଶୁଭଦାୟକ । କପାଳରେ ଗୋଟିଏ ଆବର୍ତ୍ତ ଥିଲେ ରଜ୍ଜୁ ବୋଲାଯାଏ । ଏପରି ଅଶ୍ୱ ସର୍ବଦା ଅମଙ୍ଗଳକାରୀ ।

### ଅଥ ନିଃଶ୍ରେଣୀଲକ୍ଷଣମାହ ।

ଶ୍ରୋଣ୍ୟାସ୍ଥ ତ୍ରୟ ଆବର୍ତ୍ତୈ ନିଃଶ୍ରେଣୀଶ୍ଚ ପ୍ରକୀର୍ତ୍ତିତଃ ।
ତ୍ରିକୂଟେ ଚ ତ୍ରୟଂ ଯସ୍ୟ ସର୍ବଦା ଚ ଶୁଭଂ ଭବେତ୍ ।,

ଯେଉଁ ଅଶ୍ୱର ଶ୍ରୋଣିରେ ତିନି ଆବର୍ତ୍ତ ଥାଏ, ତାହାକୁ ନିଃଶ୍ରେଣୀ କହନ୍ତି ଏବଂ ତ୍ରିକୂଟରେ ତିନି ଗୋଟି ଆବର୍ତ୍ତ ଥିଲେ ତାହାକୁ ମଧ୍ୟ ନିଃଶ୍ରେଣୀ କହନ୍ତି । ଏହିପରି ଅଶ୍ୱ ସର୍ବଦା ସୁଖପ୍ରଦ ।

### ଚିନ୍ତାମଣି ଲକ୍ଷଣ ଏବଂ ଫଳମାହ ।

କଣ୍ଠେ ଯସ୍ୟ ମହାବର୍ତ୍ତଃ ଚିନ୍ତାମଣିରିତିସ୍ମୃତଃ ।
ନାଶାମଧ୍ୟେ ଯଦାବର୍ତ୍ତେ ବାଞ୍ଛିତାର୍ଥବିବର୍ଦ୍ଧନଃ ।

ଯେଉଁ ଅଶ୍ୱର କଣ୍ଠରେ ବୃହତ୍ ଆବର୍ତ୍ତ ଥାଏ ତାହାକୁ ଏବଂ ନାଶା ମଧ୍ୟରେ ଥିଲେ ମଧ୍ୟ ତାହାକୁ ଚିନ୍ତାମଣି କହନ୍ତି । ଉକ୍ତ ପ୍ରକାର ଆବର୍ତ୍ତ ଥିବାରୁ ଅଶ୍ୱ ପ୍ରଭୁର ବାଞ୍ଛିତ ସିଦ୍ଧ କରନ୍ତି ।

### ଧୃବାବର୍ତ୍ତ ଲକ୍ଷଣ ଓ ଦୋଷମାହ ।

ଉରସି ଦ୍ୱୌ ତଥା ମୂର୍ଦ୍ଧ୍ନି ରନ୍ଧ୍ରୋପରନ୍ଧ୍ରୟୋ ତଥା ।
ଏକଂ ଲଲାଟମଧ୍ୟଂ ସ୍ୟାତ୍ ଅପାନେପି ତଥା ଭବେତ୍ ।
ଅଷ୍ଟାଦଶ୍ଚ ଆବର୍ତ୍ତୌ ଭବନ୍ତି ଯସ୍ୟ ବାଜିନଃ ।
ସର୍ବଦା ସର୍ବଦୁଃଖଂ ସ୍ୟାଦ୍ଧାତା ଗାର୍ଗେଣ ଭାଷିତଂ ।

ଉରରେ, ଶିରରେ, ରନ୍ଧ୍ରରେ, ଉପରନ୍ଧ୍ରରେ, ଦୁଇ ଗୋଟି ଲେଖାଏ ଏବଂ ଲଲାଟରେ, ଅପାନରେ ଗୋଟିଏ ଲେଖାଏ ଆବର୍ତ୍ତ ଥିଲେ,

ତାହାକୁ ଧୂବାବର୍ତ୍ତ କହାଯାଏ । ଏହି ଆବର୍ତ୍ତମାନ ଅଶ୍ୱମ ନଙ୍କଠାରେ ଥିବାର ଯୋଗ୍ୟ । ଏଥିରୁ ଊଣା ଅଧିକ ଥିଲେ ସେହି ଅଶ୍ୱ ସର୍ବଦା ଦୁଃଖଦାୟକ ।

ଶ୍ୟାମକର୍ଣ୍ଣଲକ୍ଷଣମାହ ।

ସର୍ବଶ୍ୱେତୋ ଭବେଦ୍ ଯସ୍ୟ ହୟସ୍ୟାମେବକର୍ଣ୍ଣକଃ ।
ସ ବାଜୀ ଚ କ୍ରତୁମେଧାର୍ହ ଶ୍ୟାମକର୍ଣ୍ଣଃ ପ୍ରକୀର୍ତ୍ତିତଃ ।

ଯେଉଁ ଅଶ୍ୱର ସର୍ବାଙ୍ଗ ଶୁକ୍ଳ ଏବଂ ଗୋଟିଏ କର୍ଣ୍ଣ କୃଷ୍ଣ ଥାଏ ସେହି ଅଶ୍ୱ ଅଶ୍ୱମେଧର ଯୋଗ୍ୟ । ତାହାକୁ ଶ୍ୟାମକର୍ଣ୍ଣ କହନ୍ତି ।

ଫଳମାହ ।

ଅକାଳମୃତ୍ୟୁ ସନ୍ତାପ୍ତି ଶତ୍ରୁବ୍ୟାଧିଭୟାନି ଚ ।
ଦୂରତୋ ଚ ବ୍ରଜନ୍ତ୍ୟସ୍ତ ଶ୍ୟାମକର୍ଣ୍ଣ ଗୃହେସ୍ଥିତେ ।

ଯାହାର ଗୃହରେ ଶ୍ୟାମକର୍ଣ୍ଣ ଅଶ୍ୱ ଥାଏ, ତାହାର ଗୃହ ବାଧା-ଶୂନ୍ୟ ହୋଇଥାଏ ।

କାଳାକ୍ଷିଲକ୍ଷଣ ଏବଂ ଫଳମାହ ।

କାଳାକ୍ଷୋ ଯୀବଶ୍ଚ ସ୍ତ୍ୟାଯୋଽଶ୍ୱୋଜାଙ୍କିତୋ ଭବେତ୍ ଯଦ ।
ଜାୟାଧନହରଂ ତସ୍ମାତ୍ ସମରଣଶ୍ଚ ରଣାଙ୍ଗଣେ ।

କୃଷ୍ଣବର୍ଣ୍ଣ ଚଞ୍ଚଳନେତ୍ରର ଅଶ୍ୱ ଅର୍ଥାତ୍ ଯାହାର ନେତ୍ର ସର୍ବଦା କୁମ୍ଭଲଚକ୍ର ପରି ବୁଲୁଥାଏ, ଏପରି ଅଶ୍ୱ ଅଜ୍ଞାନବଶତଃ କଣିଥିଲେ ମଧ୍ୟ ତ୍ୟାଗ କରିବାର ଯୋଗ୍ୟ । ଏପରି ଅଶ୍ୱରକ୍ଷିଲେ ଜାୟା ଧନ ବିନାଶ ହୁଏ ଓ ନିଜେ ମଧ୍ୟ ସଂଗ୍ରାମରେ ଶତ୍ରୁ ମୁଖରେ ପତିତ ହୁଏ ।

କାକୁଦ୍ ଅଧ ଲକ୍ଷଣ ଏବଂ ଫଳମାହ ।

କାକୁଦ୍ୟାଦି ପ୍ରଦୋଷ ପୁନ ମୂଷଳ ହଳ ନାଗନ ବାଭରକ୍ଷ ।
ସ୍କନ୍ଧାବର୍ତ୍ତ ତ୍ରିକର୍ଣ୍ଣୌ ଦ୍ୱିଖୁର କେକହତଃ ସର୍ପ ଜଂଘ୍ର କରୋଷଃ ।

ଷଣ୍ଢି କୁକ୍ଷି ଉତ୍ମୋଷ୍ଠ ପ୍ରବଳଭଗୁଷଣା ମସ୍ତକାବର୍ତ୍ତହୀନଃ
ଚକ୍ଷୁ ଶୁକ୍ଳାଶ୍ରୁପାତୋ ନୃପବର ସ ହ୍ୟଶ୍ୱ ସର୍ବକାମାର୍ଥନାଶ ॥

କାକୁଦ, ସ୍ତନ, ମୂଷଳ, ହଲ, ନାଗିନୀ ବାତଚକ୍ର, ସ୍ନିଗ୍ଧବର୍ଣ୍ଣ, ଚିକଣୀ, ଦ୍ୱିଖୁର, ସର୍ପଜିହ୍ୱା, ଏକକୋଷ, ଶୃଙ୍ଗି, କୁକ୍ଷିଚ୍ଛିଦ୍ର, ଉର୍ଦ୍ଧ୍ୱ ଓଷ୍ଠ, ବୃହତ୍‌ଓଷ୍ଠ ଅର୍ଥାତ୍ ଅଣ୍ଡକୋଷ, ମସ୍ତକ ଆବର୍ତ୍ତହୀନ, ଚକ୍ଷୁଶୁକ୍ଳ, ଅଶ୍ରୁପାତ, ହେ ନୃପବର ଏପରି ଦୋଷଯୁକ୍ତ ଅଶ୍ୱ ସର୍ବକାମାର୍ଥ-ନାଶକାରୀ ହୁଅନ୍ତି ।

ସ୍ୱାମିଘାତକାଶ୍ୱଲକ୍ଷଣଂ ।

କାକୁଦ କଲ୍କୁଦଶ୍ଚୈବ କରାଳ କୃଷ୍ଣତାଲୁକା ।
ହୀନୋଧିକଶ୍ଚ ଦନ୍ତଶ୍ଚ ସତ୍ତ୍ୱେତେ ସ୍ୱାମିଘାତକାଃ ॥

କାକୁଦ, କଲ୍କୁଦ, କରାଳ, କୃଷ୍ଣତାଲୁକା, ହୀନ ବଢ଼ ଦାନ୍ତ, ଅର୍ଥାତ୍ ବାହାରିଦାନ୍ତ ଏମାନେ ଭର୍ତ୍ତାନାଶକାରୀ ହୁଅନ୍ତି ।

ପ୍ରକାରାନ୍ତରେଣ ।

ହୀନୋଧିକଶ୍ଚ ଦନ୍ତଶ୍ଚ ବିଷମଂ କରାଳଂ ତଥା ।
ନତୋନ୍ନତଶ୍ଚ ଦନ୍ତଶ୍ଚ ସତ୍ତ୍ୱେତେ ସ୍ୱାମିଘାତକାଃ ॥

ସାନଦ୍ରିଆ ଦାନ୍ତ ଥିବ ଅଥବା ଅଲଗା ଅଲଗା ଥିବ ବା ଗୋଟିକ ଉପରେ ଗୋଟିଏ ବିଷମଭାବରେ ଥିବ, ଏପରି ଅଶ୍ୱ ସ୍ୱାମିର ମୂଳ ସହିତେ ବିନାଶ କରେ ।

ତାଲୁଲକ୍ଷଣ ଏବଂ ଫଳମାହ ।

ନୀଳଂ କୃଷ୍ଣଞ୍ଚ କଲୁଷଂ ଶ୍ୟାମଳଂ ଇନ୍ଦ୍ରଗୃପବତ୍ ।
ଶୋଣଂ ପୀତଂ ଚ ଶ୍ୱେତଞ୍ଚ ସର୍ବତ୍ର ଶୁଭଦାୟକଂ ।
ମାତା ପିତା ହତୋ ଭ୍ରାତା ଜାୟା ପୁତ୍ର ତଥୈବଚ ।
ଅଗ୍ନିବାଧାର୍ଥନାଶଞ୍ଚ ସପ୍ତ ଦୋଷୋ ପ୍ରକାଶ୍ୟତେ ॥

ଯେଉଁ ଅଶ୍ୱର ତାଳୁରେ ନୀଳ, କୃଷ୍ଣ, ମାଞ୍ଜିଆ, ଶ୍ୟାମଳ, ଅଥବା ଇନ୍ଦ୍ରଧନୁ ତୁଲ୍ୟ ରକ୍ତ, ପୀତ, ହରିତ୍‌ବର୍ଣ୍ଣ ଥାଏ, ଏପରି ଅଶ୍ୱ ଗୃହରେ ଥିଲେ ତାହାର ମାତା, ପିତା, ବନ୍ଧୁ, ଭ୍ରାତା, ପୁତ୍ର, ଜାୟା ଅଗ୍ନି ଅଦ୍ଧ ଇତ୍ୟବସ୍ତୁମାନଙ୍କୁ ସର୍ବନାଶ କରାଇ ଦିଏ ।

ସ୍ତନଦୋଷଫଳମାହ ।

ସ୍ତନଦୋଷୋଦ୍ଭବେ ଯସ୍ୟ ଭାର୍ଯ୍ୟାପୁତ୍ରବିନାଶନଂ ।
ଧନକ୍ଷୟୋ ମାନହାନି ସ୍ଥାନଭ୍ରଂଶୋଽପି ଜାୟତେ ।

ଯାହାର ଗୃହରେ ସ୍ତନଦୋଷଯୁକ୍ତ ଅଶ୍ୱ ଥାଏ ତାହାର ଜାୟା ପୁତ୍ର ଧନକ୍ଷୟ ମାନହାନି ପଦେ ପଦେ ଭୋଗ ହୁଏ ।

ମୂଷଳହନଫଳମାହ ।

ଦେହକ୍ଲେଶୋ ଭ୍ରାତୃନାଶୋ କଦାଚିତ୍ ଭ୍ରାତୃବାତୁଳଃ ।
ମନସ୍ତାପାର୍ଥନାଶଞ୍ଚ କୁର୍ବନ୍ତି ମୂଷଳ ହନ ।

ମୂଷଳ ହନ ଦୋଷଯୁକ୍ତ ଅଶ୍ୱ ଯାହାର ଥାଏ ତାହାର ଦେହ-ପୀଡ଼ା, ଭ୍ରାତୃନାଶ ବା କଦାଚିତ୍ ଭ୍ରାତୃ ବାତୁଳ ହୋଇଯାଏ ଓ ମନ-ସ୍ତାପ, ଅର୍ଥନାଶ ପଦେ ପଦେ ହେଉଥାଏ ।

ଉପରୋକ୍ତ ଦୋଷନାଶନାର୍ଥ ଲକ୍ଷଣମାହ ।

ପାଦଶ୍ଚ ଦ୍ୱିଗୁଣଶ୍ଚୈବ ଲଲାଟେ ଶ୍ୱେତ ଦୃଶ୍ୟତେ ।
ସମସ୍ତ ଦୋଷ ହନ୍ୟନ୍ତି ବଦନ୍ତି କୁଶଳାଜନାଃ ।

ପାଦଠାରୁ ବଳବନ୍ତ ଶୁକ୍ଳ ଯେଉଁ ଅଶ୍ୱର ଲଲାଟରେ ଦେଖାଯାଏ, ସେହି ଅଶ୍ୱ ସମସ୍ତ ଦୋଷବିନାଶକ ହୁଏ ।

ନାଗିନୀ ଫଳମାହ ।

ଶରୀରେ ଶୂଳରୋଗଶ୍ଚ ବ୍ରଣରୋଗଂ ମନୋବ୍ୟଥା ।
ବସ୍ତ୍ରହୀନଂ ଯୁଦ୍ଧପୀଡ଼ା କୁର୍ବନ୍ତି ନାଗିନୀ ଫଳଂ ।

ନାଗେନ୍ଦ୍ରଦୋଷଯୁକ୍ତ ଅଶ୍ୱ ଯାହାର ଗୃହରେ ଥାଏ ତାହାର ଶରୀରରେ ଶୂଳରୋଗ, ବ୍ରଣରୋଗ ଏବଂ ଯୁଦ୍ଧପୀଡ଼ା, ମନୋବ୍ୟଥା ବସ୍ତ୍ରହୀନ ଦୁଃଖରେ ଲାଗି ହୁଏ, ଏପରି ପଣ୍ଡିତଗଣଙ୍କର ଉକ୍ତି ଅଛି ।

ପାତଳକ୍ଷ ଫଳମାହ ।

ଅଗ୍ନିଚୌର ମହତ୍ ପୀଡ଼ା କାର୍ଯ୍ୟନାଶଂ ତଥୈବଚ ।
ଶତ୍ରୁବୃଦ୍ଧି କୁଳଂ ହନ୍ତି ପାତଲକ୍ଷ୍ମ ଦୃଶ୍ୟତେ ।

ପାତଳକ୍ଷ ଦୋଷଯୁକ୍ତ ଅଶ୍ୱ ଯାହାର ଗୃହରେ ଥାଏ, ତାହାର ଶରୀରରେ ମହତ୍ ପୀଡ଼ା, ଚୋରଭୟ, କାର୍ଯ୍ୟନାଶ, ଶତ୍ରୁବୃଦ୍ଧି ଏବଂ କୁଳ ବିନାଶକୁ ପ୍ରାପ୍ତ ହୁଏ ।

ସ୍କନ୍ଧାବର୍ତ୍ତ ଫଳମାହ ।

ସଂଗ୍ରାମେ ଶତ୍ରୁସଙ୍ଘାତଂ ହସ୍ତରୋଗ ବ୍ରଣଂ ବ୍ୟଥା ।
ଗ୍ରହଣୀ ରୋଗସଂଯୁକ୍ତଂ ସ୍କନ୍ଧାବର୍ତ୍ତ ଫଳଂ ଭବେତ୍ ।।

ଯେଉଁ ଅଶ୍ୱର ସ୍କନ୍ଧରେ ଆବର୍ତ୍ତ ଥାଏ, ତାହାର ସ୍ୱାମୀ ସଂଗ୍ରାମରେ ହାରମାନେ ଏବଂ ହସ୍ତରୋଗ, ବ୍ରଣରୋଗ, ସନ୍ତାମନ୍ଦ, ଗ୍ରହଣୀ ରୋଗରେ ପୀଡ଼ିତ ହୁଏ ।

ଛିନ୍ନକର୍ଣ୍ଣଘୋଟକ ଫଳମାହ ।

କଦାଯୁକ୍ତଂ ଦରିଦ୍ରଶ୍ଚ ନୀଚସଙ୍ଗ ମତିଭ୍ରମଃ ।
ଦେହପୀଡ଼ା ପ୍ରାଣନାଶ ଛିନ୍ନକର୍ଣ୍ଣ ଘୋଟକେ ଫଳଂ ।।

ଯାହାର ଛିନ୍ନକର୍ଣ୍ଣ ଦୋଷଯୁକ୍ତ ଅଶ୍ୱ ଥାଏ, ସେହି ବ୍ୟକ୍ତି ସର୍ବଦା କଦାଯୁକ୍ତ, ଦରିଦ୍ର, ନୀଚସଙ୍ଗ, ମତିଭ୍ରମ, ଦେହପୀଡ଼ାରେ ପ୍ରାଣନାଶକୁ ପ୍ରାପ୍ତ ହୁଏ ।

ଦ୍ୱିଶୂର ଫଳମାହ ।

ଚାମ୍ପୃ ଧନହରଂ ଉସ୍ମାଦ୍ ସ୍ୱାମିନୋ ସର୍ବଦୁଃଖଦଃ ।
ଦ୍ୱିଶୂର ଫଲ ଯସ୍ୟାସ୍ତି ମୂନ ଗାର୍ଗେଣ ଭାଷିତଂ ॥

ଯାହାର ଗୃହରେ ଦ୍ୱିଶୂରଯୁକ୍ତ ଅଶ୍ୱ ଥାଏ, ତାହାର ଚାମ୍ପୃ, ଧନ ଏବଂ ସର୍ବ ଦୁଃଖରେ ବାଳାଘାତ ହୁଏ । ଏପରି ଗାର୍ଗମୁନିଙ୍କ ଉକ୍ତି ।

ସର୍ପଜିହ୍ୱାଫଳମାହ ।

କୁଲକ୍ଷୟଂ ଧନନାଶଂ ସ୍ୱାମିନୋ ମୃତ୍ୟୁରେବଚ ।
ଚାମ୍ପୃନାଶଂ ସର୍ପଘାତଂ ସର୍ପଜିହ୍ୱା ଗୃହେ ସ୍ଥିତେ ॥

ସର୍ପଜିହ୍ୱାଦୋଷଯୁକ୍ତ ଅଶ୍ୱ ଯାହାର ଗୃହରେ ଥାଏ, ତାହାର କୁଳକ୍ଷୟ, ଅର୍ଥନାଶ, ଚାମ୍ପୃନାଶ, ସର୍ପାଘାତ ଏବଂ ଶେଷେ ମୃତ୍ୟୁମୁଖରେ ପତିତ ହୁଏ ।

ଏକଦୋଷ ଫଳମାହ ।

ଖଳପୀଡ଼ାର୍ଥନାଶଞ୍ଚ ଚାମ୍ପୃ ପୁତ୍ର ତଥୈବଚ ।
ମହତ୍ ବ୍ୟାଧି ମନସ୍ତାପ ମେକଦୋଷସ୍ୟ ଲକ୍ଷଣଂ ॥

ଏକଚୋଷଦୋଷଯୁକ୍ତ ଅଶ୍ୱ ଯାହାର ଗୃହରେ ବର୍ତ୍ତମାନ, ତାହାର ଅର୍ଥନାଶ, ଖଳପୀଡ଼ା, ଚାମ୍ପୃନାଶ, ପୁତ୍ରନାଶ, ମନସ୍ତାପରେ ବାଳାଘାତ ହୁଏ ।

ଶଙ୍ଖି ଫଳମାହ ।

ମହତ୍ ପୀଡ଼ା ମନସ୍ତାପ କଦାଚିତ୍ ମୃତ୍ୟୁରେବଚ ।
ଶତ୍ରୁ ବୃଦ୍ଧି ଭବେ ଶୃଙ୍ଗି ମାନହାନି ଧନକ୍ଷୟଂ ॥

ଶୃଙ୍ଗିଦୋଷଯୁକ୍ତ ଅଶ୍ୱ ଯାହାର ଗୃହରେ ବର୍ତ୍ତମାନ, ତାହାର ଶରୀରରେ ମହତ୍ ପୀଡ଼ା, ମନସ୍ତାପ, ଅକସ୍ମାତ୍ ମୃତ୍ୟୁ, ଶତ୍ରୁବୃଦ୍ଧି ଓ ଧନକ୍ଷୟ ନିଶ୍ଚୟ ହୁଏ ।

### କ୍ଷିଭ୍ରମ ଫଳମାହ ।

ପୁତ୍ରହାନି ମହତ୍ ପୀଡ଼ା ନାନାବ୍ୟାଧି ବିଶେଷତଃ ।
ସ୍ଥାନଭ୍ରଷ୍ଟଂ ପ୍ରାଣନାଶଂ କ୍ଷିଭ୍ରମସ୍ତୁ ଦୃଶ୍ୟତେ ।।

କ୍ଷିଭ୍ରମଦୋଷଯୁକ୍ତ ଅଶ୍ୱରେ ପୁତ୍ରହାନି, ମହତ୍ ପୀଡ଼ା, ନାନାବ୍ୟାଧି, ସ୍ଥାନଭ୍ରଷ୍ଟ ଏବଂ ପ୍ରାଣନାଶ ହୁଏ ।

### ଊର୍ଦ୍ଧ୍ୱବୃତ୍ତ ଫଳମାହ ।

ଶରୀରେ କୁଷ୍ଠରୋଗଶ୍ଚ ନାନାବ୍ୟାଧି ବିଶେଷତଃ ।
ଚିରସ୍ଥାନ ନ ଭବନ୍ତି ଊର୍ଦ୍ଧ୍ୱବୃତ୍ତସ୍ୟ ଦୃଶ୍ୟତେ ।।

ଊର୍ଦ୍ଧ୍ୱବୃତ୍ତଦୋଷଯୁକ୍ତ ଅଶ୍ୱଦ୍ୱାରା ଶରୀରରେ କୁଷ୍ଠରୋଗ, ନାନାବ୍ୟାଧି ଏବଂ କୌଣସି ସ୍ଥାନରେ ହେଲେ ସ୍ୱାମିର କାଳ ନବାହ ହୁଏ ନାହିଁ ।

### ହୀନମସ୍ତକ ଫଳମାହ ।

ସ୍ଥାନଭ୍ରଷ୍ଟାଗ୍ନି ପୀଡ଼ା ଚ ପୁତ୍ରହାନି ଧନକ୍ଷୟଂ ।
ମହତ୍ ବ୍ୟାଧି ପ୍ରାଣପୀଡ଼ା ଭବନ୍ତି ହୀନମସ୍ତକଃ ।।

ଯେଉଁ ଅଶ୍ୱର ହୀନମସ୍ତକ ଦୋଷ ଥାଏ, ତାହାର ସ୍ୱାମିଙ୍କ ସ୍ଥାନଭ୍ରଷ୍ଟ ଅଗ୍ନି ପୀଡ଼ା, ପୁତ୍ରହାନି, ଧନ କ୍ଷୟ, ମହତ୍ ବ୍ୟାଧି, ପ୍ରାଣପୀଡ଼ା ପ୍ରାପ୍ତ ହୁଏ ।

### ଚକ୍ଷୁଶ୍ଚୁଙ୍କା ଫଳମାହ ।

ଭାର୍ଯ୍ୟାବିୟୋଗଦୁଃଖଞ୍ଚ ଦେହପୀଡ଼ା ତଥୈବଚ ।
ଭ୍ରାତୃହାନି ମହତ୍ ପୀଡ଼ା ଚକ୍ଷୁଶ୍ଚୁଙ୍କା ଗୃହେ ସ୍ଥିତେ ।।

ଚକ୍ଷୁଶ୍ଚୁଙ୍କଦୋଷର ଅଶ୍ୱ ଯାହାର ଥାଏ, ତାହାର ଭାର୍ଯ୍ୟାବିୟୋଗ ଦୁଃଖ, ଦେହପୀଡ଼ା, ଭ୍ରାତୃହାନି, ମହତ୍ ପୀଡ଼ାରେ କାଳ ଯାଏ ।

### ସର୍ବାଶୁଭାବର୍ତ୍ତଲକ୍ଷଣମାହ ।

ଅଶ୍ରୁପାତହନୁଗଣ୍ଡହୃଦ୍ୟଂ ନ ପ୍ରୋଥ ଶଙ୍ଖ କଟବସ୍ତିଜାନୁଷୁ ।
ପୁଚ୍ଛ ନାଭି କକୁଦେଽଥ ତାଳୁକେ ସବ୍ୟ କୁକ୍ଷି ଚରଣେ ନ ବର୍ତ୍ତିଷୁ ॥

ଯେଉଁ ଅଶ୍ୱର ଅଶ୍ରୁପାତ ହେଉଥିବ, ହନୁ, ଗଣ୍ଡ, ହୃଦୟ, ଗଳ-ପ୍ରୋଥ, ଶଙ୍ଖ, କଟି, ବସ୍ତି ଜାନୁରେ ଆବର୍ତ୍ତ ଥାଏ; ସେପରି ଅଶ୍ୱ ସର୍ବତ୍ର ଅଶୁଭଦାୟକ ।

### ଅଶ୍ରୁପାତଫଳମାହ ।

ଅସୂ ପୁତ୍ରଂ ବିନାଶାୟ ସର୍ବଦା ଶୋକଦାୟକଃ ।
ସ୍ୱାମିନୋ ବାତରୋଗଶ୍ଚ ଅଶ୍ରୁପାତଶ୍ଚ ଦୃଶ୍ୟତେ ।

ଅଶ୍ରୁପାତ ଅଶ୍ୱ ଯାହାର ଥାଏ, ତାହାର ଅସୂ-ପୁତ୍ର-ବିନାଶ, ସର୍ବଦା ଶୋକଦାୟକ ଓ ବାତରୋଗରେ କାଳାତୀତ ହୁଏ ।

### ହୃଦାବର୍ତ୍ତଫଳମାହ ।

ପୁତ୍ରଂ ହନ୍ତି ଧନଂ ହନ୍ତି ହୃଦି ସ୍ଥିର କଦାଚନଃ ।
ନାନା ପୀଡ଼ା ପ୍ରପୀଡ଼ନ୍ତି ହୃଦାବର୍ତ୍ତ ଗୃହେ ସ୍ଥିତେ ।

ହୃଦାବର୍ତ୍ତ ଅଶ୍ୱ ଯାହାର ଥାଏ, ତାହାର ପୁତ୍ର ଧନ ନାଶ ହୁଅନ୍ତି, ମତି ସ୍ଥିର ରହେ ନାହିଁ ଓ ନାନା ପୀଡ଼ାରେ କାଳାତୀତ ହୁଏ ।

### ପୃଷ୍ଠଯୁକ୍ତହୟଲକ୍ଷଣଂ ।

ପୃଷ୍ଠଯୁକ୍ତୌ ହୟୌ ଯସ୍ୟ ସ୍ୱାମିନୋ ମୃତ୍ୟୁରେବଚ ।
ଧନନାଶଂ ପୁତ୍ରନାଶଂ ଭ୍ରାତୃବର୍ଗ ବିନାଶୟେତ୍ ।

ପୃଷ୍ଠଯୁକ୍ତ ହୟ ଯାହାର ଥାଏ, ତାହାର ସ୍ୱାମୀ ମୃତ୍ୟୁମୁଖରେ ପତିତ ହୁଏ ଓ ଧନ, ପୁତ୍ର, ଭ୍ରାତୃ, ବନ୍ଧୁବର୍ଗ ବିନାଶକୁ ପ୍ରାପ୍ତ ହୁଅନ୍ତି ।

### ଅଶ୍ୱମେଧଯୋଗ୍ୟାଶ୍ୱଲକ୍ଷଣମାହ ।

ଶ୍ୱେତ ପୀତୋଽଥବା କୃଷ୍ଣଂ ଶୋଣୋ ବା ପୃଷ୍ଠ ଦୃଶ୍ୟତେ ।
ସ ବାଜି ବାଜିମେଧାର୍ହ ସର୍ବ ଦୋଷେଷୁ ବର୍ଜିତଃ ।

ଯେଉଁ ଅଶ୍ୱର ଦେହରେ ଶ୍ୱେତ, ପୀତ, ହରିତ, କୃଷ୍ଣ ବା ରକ୍ତ ବର୍ଣ୍ଣର ପୃଷ୍ଠ ଦେଖାଯାଏ, ସେପରି ଅଶ୍ୱ ବାଜିମେଧର ଯୋଗ୍ୟ ।

### ଅଳ୍ପ ଗୁଣ ଏବଂ ବିଶେଷ ଦୋଷଯୁକ୍ତାଶ୍ୱ ଫଳମାହ ।

ଦୋଷେଷୁ ବର୍ଦ୍ଧମାନେଷୁ ଗୁଣ ସ୍ୱଳ୍ପ ବିନଶ୍ୟତି ।
ଯଥା କ୍ଷାରତ୍ୱମାପ୍ନୋତି ଗଙ୍ଗାମ୍ବୁ ସିନ୍ଧୁସଙ୍ଗମେ ।

ଯେଉଁ ଅଶ୍ୱର ବିଶେଷ ଦୋଷ ଏବଂ ଅଳ୍ପ ଗୁଣ ଥାଏ, ସେହି ଅଳ୍ପ ଗୁଣକୁ ଦୋଷସମୂହ ବିନଷ୍ଟ କରି ଦିଅନ୍ତି । ଯଥା ଗଙ୍ଗାମ୍ବୁ ସମୁଦ୍ର ସଂଯୋଗରେ କ୍ଷାରତ୍ୱକୁ ପ୍ରାପ୍ତ ହୋଇଥାଏ ।

### ବିଶେଷଗୁଣ ଏବଂ ଅଳ୍ପଦୋଷଯୁକ୍ତାଶ୍ୱଫଳମାହ ।

ଗୁଣେଷୁ ବର୍ଦ୍ଧମାନେଷୁ ହ୍ରସ୍ୱସ୍ୱାମଲ୍ପଲକ୍ଷଣଂ ।
ନ ବିଘ୍ନତ୍ ତୂର୍ଯ୍ୟ ଶକ୍ନୋତି ଜ୍ୱଳନ୍ତାଗ୍ନୌ ସମିତ୍ ଯଥା ।

ଯେଉଁ ଅଶ୍ୱରେ ବିଶେଷ ଗୁଣ ଏବଂ ଅଳ୍ପ ଦୋଷ ଥାଏ, ତାହା ହେଲେ ସେହି ଦୋଷମାନେ ବାଧା ଦେଇ ପାରନ୍ତି ନାହିଁ, ଯଥା ଜ୍ୱଳନ୍ତ ବହ୍ନିରେ ଆର୍ଦ୍ର ସମିଧ । ୧ ।

### ଅଳ୍ପାୟୁଲକ୍ଷଣମାହ ।

ରୋମେଷୁ ସର୍ବ ଚର୍ମେଷୁ ଚକ୍ଷୁଷ୍ଣ ବିରୂପଂ ଭବେତ୍ ।
ସର୍ବଦୋଷୈ ସମାଖ୍ୟାତା ସ୍ୱଳ୍ପାୟୁ ପାପଲକ୍ଷଣଂ ।

ରୋମରେ, ଚର୍ମରେ ଏବଂ ଚକ୍ଷୁରେ ଯେଉଁ ଅଶ୍ୱ ବିରୂପ ଥାଏ, ସେହି ଅଶ୍ୱ ସର୍ବ ଦୋଷଯୁକ୍ତ ଏବଂ ଅଳ୍ପାୟୁ ।

ସର୍ବଦୋଷାଶ୍ୱଲକ୍ଷଣମାହ ।

ଅଶ୍ୱବା ବାହନଂ ଚେଦ୍ବ ହତେ। ଦନ୍ତସ୍ତ ଯୋ ଭବେତ୍ ।
ନର୍ଦ୍ଦୋଷଃ ସ କଥଂ ଯାନ୍ତୁ ଶ୍ଚାଣ୍ଡାଳଃ କଂ ଦ୍ୱିଜୋ ଭବେତ୍ ।

ଚଢ଼ିବା ସମୟରେ ଅଡ଼ିବ ଏବଂ କାଳଥରକୁ ଦନ୍ତରେ ଛୁଣ୍ଡାଇ ଘଷାଇବ ଏବଂ କ୍ରୋଧରେ ଦନ୍ତ ରଗଡ଼ୁଥିବ, ଏପର ଅଶ୍ୱ ବର୍ଜନୀୟ, ଯେତେ ବଳଷ୍ଠ ଥିଲେ ମଧ୍ୟ । ଯଥା ଚଣ୍ଡାଳ ବ୍ରାହ୍ମଣ୍ୟକୁ ପ୍ରାପ୍ତ ହୋଇ ପାରେ ନାହିଁ ।

ଅଥ ଶୁଭଲକ୍ଷଣମାହ ।

ଦୀର୍ଘଗ୍ରୀବାକ୍ଷିକୂଟ ସ୍ତ୍ରିକ ହୃଦ ପୃଥୁଳ ସ୍ତାମ୍ରତା କୋଣଜିହ୍ୱା ।
ସୂକ୍ଷ୍ମାବକ୍ତ୍ରୋଣବାଳ ଶୁଭପଂ ଗଚ୍ଛୟଶୋ ହ୍ରସ୍ୱକର୍ଣ୍ଣୋଷ୍ଠପୁଚ୍ଛଃ ।
କଂଘାଜାନୂରୁବୃତ୍ତିଂ ସମିଦଶନ କର ଶ୍ଚାରୁ ସଂସ୍ଥାନରୂପୋ ।
ବାଜୀ ସର୍ବାଙ୍ଗଶୁଦ୍ଧୋ ଭବତ୍ତି ନରପତେଃ ଶତ୍ରୁନାଶାୟ ନତ୍ୟଂ ।

ଯେଉଁ ଅଶ୍ୱର ଗ୍ରୀବା ନେତ୍ର-ତ୍ରିକୂଟ, ହୃଦୟ ପୃଥୁଳ ଏବଂ ତାମ୍ର ବର୍ଣ୍ଣ ହୋଇଥିବ; ଓଷ୍ଠ, ପୁଚ୍ଛ, ଜଙ୍ଘ, ଜାନୁ, ବସ୍ତି ବର୍ତ୍ତୁଳ, ଜିହ୍ୱା କ୍ଷୁଦ୍ର, ଓ ଶରୀରରେ ସୂକ୍ଷ୍ମ ରୋମ ଥିବ; ସୁଶୋଭିତ ଗମନ, କର୍ଣ୍ଣ, ଓଷ୍ଠ, ପୁଚ୍ଛ, ସାନ ଥିବ; ଦନ୍ତମାନେ ସମାନଭାବରେ ଥିବେ; ଏମନ୍ତ ଅଶ୍ୱ ରାଜାମାନଙ୍କର ଶତ୍ରୁ ନାଶକର ।

ରଷ୍ଟ୍ରବର୍ଦ୍ଧକାଶ୍ୱଲକ୍ଷଣ ଏବଂ ଫଳମାହ ।

ଉପର୍ଯ୍ୟୁ ପର୍ଯ୍ୟସ୍ୟନ୍ତୁ ସୁଶ୍ରବର୍ତ୍ତ ଅଳଚ୍ଛୟଃ ।
ନଶ୍ରେଣି ତୁ ସ ବିଜ୍ଞେୟ ରଷ୍ଟ୍ରବୃଦ୍ଧିଂ କରଂ ପରଂ ।

ଯେଉଁ ଅଶ୍ୱର ପିଠିରେ ଦୁଇ ଗୋଟି ଭଉଁର ଏବଂ ତ୍ରିବର୍ତ୍ତରେ ମଧ୍ୟ ଥିବ, ତାହାକୁ ନଶ୍ରେଣି କହ । ଏପର ଅଶ୍ୱରେ ରାଜ୍ୟର ମଙ୍ଗଳ ।

କପୋଲେ ଦ୍ୱୌ ଆବର୍ତ୍ତୌ ବଦ୍ୟତେ ବାଜିନୋ ଯଦି ।
ତାବପି ନାବଭ ପ୍ରୋକ୍ତୌ ଯୁଦ୍ଧକାଳେ ଜୟପ୍ରଦଃ ॥

ଯେଉଁ ଅଶ୍ୱର କପୋଳରେ ଦୁଇ ଗୋଟି ଆବର୍ତ୍ତ ଥାଏ, ସେହି ଅଶ୍ୱ ଯୁଦ୍ଧରେ ଜୟପ୍ରଦ ହୁଏ ।

କର୍ଣ୍ଣମୂଳେ ଯଦାବର୍ତ୍ତୌ ଶଙ୍ଖମଧ୍ୟେ ଚ ତଥା ପରଃ ।
ବୃଦ୍ଧୌତୁ ବଜ୍ରଯୁକ୍ତଜ୍ଞେୟୌ ଯୁଦ୍ଧକାଲେ ଜୟପ୍ରଦୌ ॥

ଯେଉଁ ଅଶ୍ୱର ଦୁଇ କର୍ଣ୍ଣ ମୂଳରେ ଅବା ମଧ୍ୟରେ ନେତ୍ରର ଉପରେ ଆବର୍ତ୍ତ ଥାଏ, ତାହାର ବଜ୍ରଯୁକ୍ତ ସଂଜ୍ଞା । ଏପରି ଅଶ୍ୱ ଯୁଦ୍ଧକାଳରେ ଜୟପ୍ରଦ ।

ଯୁଦ୍ଧାଯୋଗ୍ୟାଶ୍ୱଲକ୍ଷଣମାହ ।

ଯସ୍ୟାବର୍ତ୍ତୌ ଭବେଦ୍ ବକ୍ତ୍ରେ କକ୍ଷାନ୍ତେ ବାଜିନୋଽଶୁଭଃ ।
ସ ରଣେ ମୃତ୍ୟୁମାପ୍ନୋତି ତତ୍ପୌ ଦ୍ୱୌ ସ୍ୱାମୀନାଶକୌ ॥

ଯେଉଁ ଅଶ୍ୱର ବକ୍ତ୍ରରେ ଅଥବା କୁକ୍ଷିରେ ଏକ ବା ଦୁଇ ବା ତିନି ଆବର୍ତ୍ତ ଥାଏ, ତାହାର ସ୍ୱାମୀ ରଣାଗଣେ ମୃତ୍ୟୁମୁଖରେ ପତିତ ହୁଏ ।

ଶୁଭଲକ୍ଷଣମାହ ।

ଉତ୍ତମାଶ୍ୱ ।

ନାଶିକାଗ୍ରେ ଲଲାଟାଗ୍ରେ ଶଙ୍ଖେ କଣ୍ଠେ ଚ ମସ୍ତକେ ।
ଆବର୍ତ୍ତୌ ଜାୟତେ ଯେଷାଂ ତେ ତଥା ତୁରଗୋତ୍ତମଃ ॥

ଯେଉଁ ଅଶ୍ୱର ନାସାରେ, ଲଲାଟରେ, ଶଙ୍ଖଦେଶରେ ଅର୍ଥାତ୍ କର୍ଣ୍ଣ ମୂଳରେ, ମସ୍ତକରେ ଆବର୍ତ୍ତ ଥାଏ, ସେହି ଉତ୍ତମ ଜାତିର ଅଶ୍ୱ ।

### ମଧ୍ୟମାଶ୍ୱଲକ୍ଷଣଂ ।

ହୃଦ୍ ସ୍କନ୍ଧ ଗଳେଚୈବ କଟିଦେଶେ ତଥୈବଚ ।
ନାଭୌ କୁକ୍ଷୌ ଚ ପାର୍ଶ୍ୱେଷୁ ମଧ୍ୟମାଶ୍ୱଃ ପ୍ରକୀର୍ତ୍ତିତଃ ।

ହୃଦୟରେ, ସ୍କନ୍ଧରେ, ଗଳରେ, କଟିରେ, ନାଭିରେ, କୁକ୍ଷିରେ ଏବଂ ପାର୍ଶ୍ୱରେ ଆବର୍ତ୍ତ ଥିଲେ ମଧ୍ୟମ ଜାତିର ଅଶ୍ୱ ଜାଣିବ ।

### ଅଧମାଶ୍ୱଲକ୍ଷଣଂ ।

ଜଙ୍ଘାୟାଂ ଜାନୁମେଢ୍ରେ ଚ ତ୍ରିବଲୌ ପୁଚ୍ଛସନ୍ଧିୟୌ ।
ପୁଚ୍ଛେ ଗୁହ୍ୟେ ଚ କକ୍ଷେ ଚ ଅଷ୍ଟାବର୍ତ୍ତାଧମାହ୍ୱୟେ ।

ଯେଉଁ ଅଶ୍ୱର ଜଙ୍ଘରେ, ଜାନୁରେ, ମେଢ୍ରରେ, ତ୍ରିବଳୀରେ, ପୁଚ୍ଛରେ ବା ପୁଚ୍ଛ ନିକଟରେ, ଗୁହ୍ୟରେ, କକ୍ଷରେ ଏରୂପ ଅଷ୍ଟ ଆବର୍ତ୍ତ ଥାଏ, ତାହାକୁ ଅଧମାଶ୍ୱ କହି ।

### ଶୁଭଫଳମାହ ଉତ୍ତମାଦ ଅଶ୍ୱସ୍ୟ ।

ତ୍ରୟୋଦଶ ଲଲାଟାସ୍ଥି ସ୍ତ୍ରିଣ୍ୟାବର୍ତ୍ତୈରଧୋର୍ଦ୍ଧଗା ।
ତ୍ରିକୂଟେପ୍ୟପରେ ଯେଷାଂ ବାଜିବୃଦ୍ଧିକରଂ ପରଂ ।

ଲଲାଟରେ ୧୩ ଗୋଟି ଅସ୍ଥି ଥାଏ, ସେହି ନିକଟରେ ତଳ ଉପର ହୋଇ ଆବର୍ତ୍ତ ଥିବ ଏବଂ ତ୍ରିକୂଟରେ ମଧ୍ୟ ଯେଉଁ ଅଶ୍ୱର ଥାଏ, ସେହି ଅଶ୍ୱ ସ୍ୱାମିର ଅପୂର୍ବ ବୃଦ୍ଧି କରାଏ ।

ଏବମେବ ପ୍ରକାରେଣ ତ୍ରୟୋଗ୍ରୀବାସମାଶ୍ରିତାଃ ।
ଯସ୍ୟାବର୍ତ୍ତ ସ ବାଜି ଚ ସର୍ବଦା ଶୁଭଦାୟକଃ ।

ଏହିପରି ଗ୍ରୀବାକୁ ଆଶ୍ରୟ କରି ତିନି ଗୋଟି ଆବର୍ତ୍ତ ଯେଉଁ ଅଶ୍ୱର ଥାଏ, ସେ ସର୍ବଦା ଶୁଭଦାୟକ ।

ଗଳାବର୍ତ୍ତୌ ଭବେତ୍ ଯସ୍ୟ ବାଜିନୋ ଦକ୍ଷିଣାଶ୍ରୟଃ ।
ସ କରୋତି ମହାସୌଖ୍ୟଂ ସ୍ୱାମିନା ଶିବସଞ୍ଜ୍ଞକଃ ।

ଗଳାରେ ଦକ୍ଷିଣାଶ୍ରୟ ହୋଇ ଯେଉଁ ଅଶ୍ୱର ଆବର୍ତ୍ତ ଥାଏ, ତାହାକୁ ଶିବସଞ୍ଜ୍ଞକ କହି । ଏପରି ଅଶ୍ୱ ସ୍ୱାମିର ମହା ସୌଖ୍ୟପ୍ରଦ ହୁଏ ।

ଜଙ୍ଘାଦାସ୍ୟବାଶ୍ୱଲକ୍ଷଣମାହ ।

ଜାନୁଦେଶେ ଯଦାବର୍ତ୍ତୌ ବାଜିନୋ ଯଦ ଦୃଶ୍ୟତେ ।
ପ୍ରବାସ ସତତଂ ଧୃତେ ସ ଭର୍ତ୍ତୁର୍କ୍ଲେଶସଂଯୁତମ୍ ॥

ଯେଉଁ ଅଶ୍ୱର ଜାନୁଦେଶରେ ଆବର୍ତ୍ତ ଥାଏ, ତାହାର ସ୍ୱାମୀ ସତତ ପ୍ରବାସୀ ଏବଂ କ୍ଲେଶରେ ପୀଡ଼ିତ ହୋଇଥାଏ ।

କତିବିଧାଃ ବର୍ଣ୍ଣା ବାଜିନଃ ଭବନ୍ତି ।

ସପ୍ତବର୍ଣ୍ଣା ଭବନ୍ତ୍ୟେବ ସର୍ବେଷାଂ ବାଜିନା ଧ୍ରୁବଂ ।
ଅନନ୍ତଂ କୀର୍ତ୍ତୟିଷ୍ୟାମି ଭେଦୈର୍ଜାତା ନନେକଧା ।

ସପ୍ତବର୍ଣ୍ଣର ଘୋଡ଼ାମାନେ ଥାନ୍ତି, ଏହା ଧ୍ରୁବ । ତାହା ମୁଁ କ୍ରମରେ ପ୍ରକାଶ କରୁ ।

ପ୍ରସିଦ୍ଧ ଲକ୍ଷଣଂ ।

ଶ୍ୱେତୋରକ୍ତ ତଥା ପୀତ ଶାରଙ୍ଗ ପିଙ୍ଗ ଏବଚ ।
ନୀଳ କୃଷ୍ଣାଥ ସର୍ବେଷାଂ ଶ୍ୱେତ ଶ୍ରେଷ୍ଠତମଃ ସ୍ମୃତଃ ।

ଶ୍ୱେତ, ରକ୍ତ, ପୀତ, ଶାରଙ୍ଗ, ପିଙ୍ଗଳ, ନୀଳ ଏବଂ କୃଷ୍ଣ ଏ ସମସ୍ତ ବର୍ଣ୍ଣରେ ଶ୍ୱେତବର୍ଣ୍ଣ ଶ୍ରେଷ୍ଠ ।

## ପଟ୍ଟାଭିଷେକାଶ୍ୱଲକ୍ଷଣଂ ।

ପଟ୍ଟାଭିଷେକେ ଭୂପତେର୍ବା ସର୍ବଶ୍ୱେତ ପ୍ରଶସ୍ୟତେ ।
ସ୍ତସ୍ୟାଶ୍ୱେବ ଯଥା ପ୍ରୋକ୍ତା ସ୍ତଥା ଶ୍ରେଷ୍ଠା ଜନେମଣ୍ଡଳେ ।

ସର୍ବଶ୍ୱେତ ଅଶ୍ୱ ଏକା ରାଜାମାନଙ୍କର ପଟ୍ଟାଭିଷେକର ଯୋଗ୍ୟ । ତାହା ଅଭାବରେ ଅପର ବର୍ଣ୍ଣର ଅଶ୍ୱମାନଙ୍କୁ ବ୍ୟବହାରକରେ ଅର୍ଣୀବ ।

## ବାଜରୂପାଣି ବାଜିବର୍ଣ୍ଣା ଭବନ୍ତି ।

ଶ୍ୱେତଃ କ୍ଷାରେଲସ୍ୟ ସଙ୍କାଶୋ ରକ୍ତଃ କୁଙ୍କୁମସନ୍ନିଭଃ ।
ପୀତଃ ହରିତ୍ ସଦୃଶନ୍ତୁ ସାରଙ୍ଗସ୍ୟ ଇତି ସ୍ମୃତଃ ।

ଶ୍ୱେତଶାଳି ଚୂର୍ଣ୍ଣବତ୍, ରକ୍ତ କୁଙ୍କୁମବତ୍, ପୀତ ହରିଦ୍ରା ସଦୃଶ ଏବଂ ଶାରଙ୍ଗ, ଶୁକ୍ଳ ଏବଂ ରକ୍ତମିଶ୍ରିତ ରଙ୍ଗ ପରି ।

## ପଞ୍ଚଖୁରଲକ୍ଷଣ ଓ ଦୋଷଫଲମାହ ।

ବଲପୃଷ୍ଠ ଗଣ୍ଡିରଣ୍ଡ ଅସ୍ତି ଯସ୍ୟ ଖୁରୋପର ।
ସୈବ ପଞ୍ଚଖୁରୋ ବାଜି ନ ଗ୍ରାହ୍ୟ ଭୂମିପସ୍ତଥା ।

ଯେଉଁ ଅଶ୍ୱର ଖୁରୋପର ଖୁର ହୋଇଥିବ ଏବଂ କଙ୍କଣ ସଦୃଶ ଚିହ୍ନମାନେ ଥିବେ, ତାହାକୁ ପଞ୍ଚଖୁରାଶ୍ୱ କହନ୍ତି । ରାଜାମାନଙ୍କର ରଖିବାର ଯୋଗ୍ୟ ନୁହେ ।

## ବଲବାନ୍ ଓ ରୋଗନାଶନାଶ୍ୱଲକ୍ଷଣମାହ ।

ଦନ୍ତ ନାଶା ଖୁରଃ ଗ୍ରୀବା ମସୃଣୋ ଦୃଶ୍ୟତେ ଯଦ ।
ସ ବାଜି ବଲବାନ୍ ଜ୍ଞେୟୋ ଭର୍ତ୍ତୁର୍ରୋଗବିନାଶକଃ ।

ଯେଉଁ ଅଶ୍ୱର ଦନ୍ତ ନାଶା ଖୁର ଗ୍ରୀବା ଚିକ୍କଣ ହୋଇଥାଏ, ସେ ବଡ଼ ବଳିଷ୍ଠାଶ୍ୱ ଏବଂ ଭର୍ତ୍ତାର ରୋଗବିନାଶକାରୀ ହୁଏ ।

### ଅନଷ୍ଟାଶ୍ୱ ଅର୍ଥାତ୍ ତ୍ୟାଗାଶ୍ୱଲକ୍ଷଣଂ ।

ଯସ୍ୟ ମେଢ୍ର ତଳାବର୍ତ୍ତୌ ବାଜିନଃ ସମ୍ପ୍ରଦୃଶ୍ୟତେ ।
ମଧୂକେତୁରିତଖ୍ୟାତା ସ ତ୍ୟାଜ୍ୟୋ ଦୂରତଃ ନୃପଃ ।

ଯେଉଁ ଅଶ୍ୱର ମେଢ୍ର ତଳରେ ଆବର୍ତ୍ତ ଥାଏ, ତାହାକୁ ମଧୂକେତୁ କହାଯାଏ । ନୃପମାନେ ଏପରି ଅଶ୍ୱକୁ ଦୂରରୁ ତ୍ୟାଗ କରିବେ ।

### ଅଥାୟୁର୍ଜ୍ଞାନ ଲକ୍ଷଣମାହ ।

ସଦ୍ଭିର୍ଦ୍ଦନ୍ତୈ ଶିତାଭ୍ରୈର୍ଭବତି ତ ଶିଶୁଃ ସୈ୍ୟକଶାୟୀ କମେଣ ।
ସନ୍ଧ୍ୟଂସୌ ମଧ୍ୟମାଗ୍ରେ ପତିତ ସମୁଦ୍ଗତୌ ସ୍ତ୍ରିଶୁଭ୍ରଃ ପଞ୍ଚବର୍ଷେ ॥
ସଦ୍ୟଂଶାନ୍ କମେଣ ତ୍ରିସରଦୁପଗତାଃ କାଳକା ପୀତ ଶୁକ୍ଳା ।
କାଚ୍ ମାକ୍ଷିକ ଶଙ୍ଖା ଉଡ୍ଡୁଖଳ ଚଳନଂ ଦନ୍ତପାତ କମେଣ ॥

ଯେଉଁ ଅଶ୍ୱର ଛଗୋଟି ଦନ୍ତ ଶୁକ୍ଳ ହୋଇଥିବ, ତେବେ ତାହାର ବୟସ ବାଳକ ବୋଲି ଜାଣିବ । ସେହି ଦନ୍ତ କଷଡ଼ା ବର୍ଣ୍ଣ ଧରିଥିଲେ ଦୁଇବର୍ଷ ଏବଂ ଯଦି ସେହି ଦନ୍ତମାନଙ୍କରେ ସନ୍ଧି ଦେଖାଯାଏ, ତିନି ବର୍ଷ । ସେହି ଦନ୍ତମାନେ କିଛି କୃଷ୍ଣବର୍ଣ୍ଣ ଦେଖାଗଲେ ଚାରି ବର୍ଷ । ସେହି ଦନ୍ତ ଯଦି ପତିତ ହୋଇ ପୁନଶ୍ଚ ଉଠିଥାନ୍ତି ତାହାହେଲେ ପାଞ୍ଚ ବର୍ଷ । ଏହିରକମ ଦନ୍ତମାନେ କ୍ରମରେ କୃଷ୍ଣ, ପୀତ, ଶୁକ୍ଳ, କାଚ, ମାକ୍ଷିକ, ଶଙ୍ଖ ସଦୃଶ ବର୍ଣ୍ଣମାନଙ୍କୁ ଧାରଣ କରି ପତିତ ହେବେ, ତାହାହେଲେ ତାହାର ବତିଶ ବର୍ଷ ବୋଲି ଜାଣିବ । ଅଥବା ଅଶ୍ୱର ଦୁଇ କାନ ମଧ୍ୟରେ ମାପିବ । ପାଞ୍ଚ ଅଙ୍ଗୁଳି ହେଲେ ଚାରି ବର୍ଷ, ସାଢ଼େ ଚାରି ଅଙ୍ଗୁଳି ହେଲେ ଏକ ବର୍ଷ ଭିତରେ ବୟସ ନିଶ୍ଚୟ କରିବ ।

ସମ୍ପୂର୍ଣ୍ଣ ।

——:※:——

# ଅଶ୍ୱଶାସ୍ତ୍ର ।

## ଷଷ୍ଠ ସର୍ଗ ।

## ଚିକିତ୍ସା ଏବଂ ରୋଗନିଦାନ ।

---

### ଖୁଦ୍ରମାଳାରୋଗ ।

ପେଟରୁ କଣ୍ଠ ପର୍ଯ୍ୟନ୍ତ ଘା ମାଳ ଗଲେ ଖୁଦ୍ରମାଳା ରୋଗ ହେଲା ବୋଲି ଜାଣିବ । ତହିଁର ଉପାୟ । ଅଥ ଲେପ—ସୋରଷ, କାକଜଙ୍ଘି ମୂଳ, ବଉଦିଆ ମୂଳ ଏ ତିନି ପଦାର୍ଥକୁ ଏକତ୍ର ମିଶାଇ ବାଟି ପକାଇବ ଓ କଷାପାଣିରେ ଘାକୁ ଧୋଇ ଏ ଲେପ ଦେବ । ଅଥ ମସଲା—ଧଳକିଆ ୧ ଭାଗ, ଅପାମାର୍ଗଚେର ୧ ଭାଗ, ଏ ଦ୍ରବ୍ୟମାନ କୁଟିବ, ସେ ଯେତେ ହେବ ତହିଁରୁ ଅଧେ ହଳଦୀଗୁଣ୍ଡ କରିବ, ପାଣିରେ ଚକଟି ଗୁଳା କରି ପକାଇବ, ତହିଁ ଉତ୍ତାରୁ ଘୋଡ଼ାକୁ ଖୁଆଇବ । ଲେପ ମଧ୍ୟ ଦେଉଥିବ, ଏପରି ଦଶ ଦିନ କଲେ ଘା ଶୁଖଇ ।

### ପ୍ରାଣଶୂଳ ।

ଘୋଡ଼ା ଭୂଇଁ କଡ଼ରେ ପଡ଼ୁଥିବ ଓ ତାହା ଭୂଇଁ ଅଖି ତରାଟିଲା ପରି ଦିଶୁଥିବ, ଏପରି ହେଲେ ପ୍ରାଣଶୂଳ ହେଲା ବୋଲି ଜାଣିବ । ତହିଁର ଉପାୟ । ମସଲା—ଘୋଡ଼ାଲବଣ ୧ ଭାଗ, ଧାନ୍ୟନ ଗଛର ଚେର ୧ ଭାଗ, ସୋମରାଜ ମଞ୍ଜି ଅର୍ଦ୍ଧ ଭାଗ, ଗୁନ୍ଦପୁର ୧ ଭାଗ, ଅଳନ୍ଧୁ ୧ ଭାଗ, ଏତେକ ପଦାର୍ଥ ଏକାଠି ଚିକ୍କଣ କରି ବାଟି ପକାଇ ଘୋଡ଼ାକୁ ପିଆଇବ, ନ ପିଇଲେ ନଳା ଗୋଟିକରେ କୌଣସି ପ୍ରକାରରେ ହେଲେ ପିଆଇବ । ଏପରି କଲେ ପ୍ରାଣଶୂଳ ରୋଗ ଭଲ ହୁଅଇ ।

### ବାୟବ୍ୟ ରୋଗ ।

ଘୋଡ଼ା ଉପରେ ଯେଉଁ ପଲାଣ୍ଡିଆ ପଡ଼ିଥାଏ ସେ ପଲାଣ୍ଡିଆ ଉତାରିଲାକ୍ଷଣି ଘୋଡ଼ା ପେଟ ମାଡ଼ି ଶୋଇପଡ଼ଇ, ବଡ଼ ବଲବଲ୍

ହୁଅଇ, ଉଠି ପାରଇ ନାହିଁ, ଉଠିଲାବେଳକୁ ଥର ଥର ହୋଇ ତଳେ ପଡ଼ିଯାଏ, ଟିକିଏ ଗଲେ ପୁଣି ଉଠଇ ଓ ଘୋଡ଼ା ପେଟମାଡ଼ି ଶୋଇ ପଡ଼ଇ, ବଡ଼ କଲବଲ ହୁଅଇ । ଏପରି ହେଲେ ବାୟୁବ୍ୟରୋଗ ବୋଲି ଜାଣିବ । ତାହାଙ୍କ ଉପାୟ—କମ୍ପଫଳ ରସ, ସଚଳବ, ଘୋଡ଼ାଲବଣ, ହଳଦଗୁଣ୍ଡ ଏହିକି ଦ୍ରବ୍ୟ ପାଣି ପକାଇ ଚକଟି ଗୁଳା କରି ଖୁଆଇବ । ତାହିଁ ଉତ୍ତାରୁ ଲାହାରଦାନା ଦେବ, ତାହାଁପରେ ଘାସ ଦେବ । ଏପରି ସାତ ଦିନ କଲେ ବାୟୁବ୍ୟ ରୋଗ ଭଲ ହୁଅଇ ।

## ପଦ୍ମଶୂଳ ରୋଗ ।

ଘୋଡ଼ା ଦାନା ଅଳପ ଖାଇ ଝାଡ଼ାରେ ଭୂଇଁ ଶୋଉଥାଇ, ପାଣି ତୁଣ୍ଡ ନ ବୁଡ଼ାଇ ପିଅଇ ନାହିଁ, ପାଣି ଗୁରୁ ଗୁରୁ କରୁଥାଇ ଓ ଚକ୍ଷୁ ଥିର ରହିଥାଇ । ଏପରି ଯେବେ ଘୋଡ଼ା ହୋଇଥିବ ତେବେ ପଦ୍ମଶୂଳ ରୋଗ ବୋଲି ଜାଣି ପାରିବ । ତାହାଙ୍କ ଉପାୟ—ଗମ୍ଭାରିଫଳ ୨ଭାଗ, ପାତାଳକେତକୀମୂଳ ୨ ଭାଗ, ହଳଦ ୨ ଭାଗ, ସବୁ ଗୁଣ୍ଡ କରି ପାଣିରେ ଚକଟି ଗୁଳା କରି ଖୁଆଇବ । ଏପରି କଲେ ସାତ ଦିନରେ ରୋଗ ଭଲ ହୋଇଯିବ ।

## କାଦ୍ରଶୂଳ ।

ଘୋଡ଼ା କୁନ୍ଥାଉ ଥିବ, ଦୁଇ କଡ଼ରେ ପଡ଼ୁଥାଇ, ଦଣ୍ଡେ ରହି ପୁଣି ପଡ଼ୁଥାଇ ଓ ପିଠି ଲୁଅଉଁଥାଇ, କେତେ କେତେବେଳେ ମଥା ଟେକୁଥାଇ ଓ କେତେବେଳେ ପୋତୁଥାଇ । ଏପରି ହେଲେ କାଦ୍ରଶୂଳ ବୋଲି ଜାଣିବ । ତାହାଙ୍କ ଉପାୟ—କୁଅଣି ୨ ଭାଗ, ଘୋଡ଼ାଲୁଣ ୧ ଭାଗ, ମଥା ୧ ଭାଗ, ହଳଦ ୨ ଭାଗ, ଗୁଗୁଲ ୧ ଭାଗ, ସବୁ ଗୁଣ୍ଡ କରି ତତଲା ପାଣିରେ ଚକଟି ଗୁଳା କରି ଘୋଡ଼ାକୁ ଖୁଆଇବ । ଏପରି ସାତ ଦିନ କଲେ ଉକ୍ତ ରୋଗ ଭଲ ହୁଅଇ ।

ପାଣିଶୂଳ ।

ଘୋଡ଼ା ସ୍ତମ୍ଭୀଭୂତ ହୋଇ ଠିଆ ହୋଇଥିବ ଓ ପଛ ଦୁଇ ଗୋଡ଼ ଝାପୁ ମାରୁଥିବ, ଦୁଇ କାନରୁ ପାଣି ବହୁଥିବ । ଏପରି ହେଲେ ପାଣି-ଶୂଳ ରୋଗ ବୋଲି ଜାଣିବ । ତହିଁର ଉପାୟ—କଳାଜୀରା ୧ ଭାଗ, ସୈନ୍ଧବ ଲବଣ ୧ ଭାଗ, ସୋରଷ ୧ ଭାଗ, ଗାଙ୍ଗବସ୍ତ୍ରଣାମୂଳ ୧ଭାଗ, ହଳଦ ୧ ଭାଗ, କଟୁକି ୧ ଭାଗ, ଗୁଣ୍ଡ କରି ସୋରଷତେଲ ପକାଇ ଚକଟିବ ଓ ଗୁଳା କରି ଖୁଆଇବ । ଏପରି କଲେ ସାତ ଦିନରେ ରୋଗ ଭଲ ହୋଇଯିବ ।

ବାତଶୂଳ ।

ଘୋଡ଼ା ଭୂମି ଶୁଙ୍ଘଇ, ଝାପୁ ମାରୁଥାଇ, ଦୁଇ ପଗା ମାରଇ, ପଡ଼ୁଥାଇ, ପୁଣି ଉଠି ପଖା ମାରଇ ଓ କୁନ୍ଥାଇ କୁନ୍ଥାଇ ଧଳୁଥାଇ । ତାହା ହେଲେ ବାତଶୂଳ ବୋଲି ଜାଣିବ । ତାହାର ଉପାୟ—ବରୁଣ ଅଗି, ଘୋଡ଼ାଲୁଣ, ଅଲନ୍ଧ ସବୁ ଗୁଣ୍ଡ କରି କଞ୍ଚା ଦୁଧରେ ଗୋଳି ପିଆଇବ । ଏପରି ସାତ ଦିନ କଲେ ବାତଶୂଳ ଭଲ ହୁଅଇ ।

ସକଳଅଙ୍ଗବାତ ।

ଘୋଡ଼ାର ଗୋଡ଼ ଉପରେ ଗଣ୍ଠିମାନ ଫୁଲଇ, ସେଠାରୁ ଖୁରୁ ପର୍ଯ୍ୟନ୍ତ ଫୁଲିଯିବ, ତେବେ ସକଳଅଙ୍ଗବାତ ବୋଲି ଜାଣିବ । ତହିଁର ଉପାୟ—କମ୍ବପତ୍ର, ଘୋଡ଼ାଲୁଣ ଏ ଦୁଇ ପଦାର୍ଥ ପାଣିରେ ଗୋଳି କରି ପିଆଇବ । ଅଥ ବାହାର ଫୁଲାପାଇଁ ଲେପ—ଯୁଆଣି, ହାତପିପଡ଼ା, ଅରଖମୂଳ ଏ ସବୁ କାଞ୍ଜିପାଣିରେ ବେଦନା ଉପରେ ବାନ୍ଧିବ । ଏପରି କଲେ ରୋଗ ଭଲ ହୁଅଇ ।

ଘାଡ଼ଙ୍କାବାତ ।

ପଚ୍ଛଲି ପଛଝାପୁ ମାରଇ, କଟୁକ ଚେଷ୍ଟା ଧରଇ, ମନୁଷ୍ୟଙ୍କୁ

ପାଖକୁ ଯାଇ ଦଅଇ ନାହିଁ । ଏପରି ହେଲେ ସାଢ଼ଙ୍ଗାବାତ ବୋଲି ଜାଣିବ । ଇହିଁକ ଉପାୟ—ରାସ୍ନା, ଗନ୍ଧସୁର, ଗୁଗୁଲ, ପଚୁଆଫଳ, ହଳଦଗଣ୍ଡି, ପାତଳ୍ପ ଅର୍ଖପତ୍ର ସବୁ ଗୁଣ୍ଡ କରି ଗୋଳା କରି ଖୁଆଇବ । ଦେବଦାରୁ, ଭେଳପତ୍ର, କାଫଡ଼ ଏହାଙ୍କୁ କାଞ୍ଜିପାଣିରେ ବାଟି ପାଞ୍ଚଡ଼ା ପାଣିରେ ଗୋଳ କରି ପିଆଇବ । ଏପରି ସାତ ଦିନ କଲେ ରୋଗ ଭଲ ହୋଇଯିବ ।

## ଧଂସୁଆ ବାତ ।

ଘୋଡ଼ା ଦୁଇ ପଖା ନ ପାଡ଼ଇ, ଶିର ନ ପାଡ଼ଇ, ଠାଣିହୋଇ ଠିଆ ହୋଇଥିବ, ଅଉ ସନ୍ଧିରେ ଧଂସୁଥିବ । ଏପରି ହେଲେ ଧଂସୁଆ ବାତ । ଇହିଁକ ଉପାୟ — କାଇଁଚପତ୍ର ଦୁଧରେ ବାଟି ଖାଇବ, ଅଉ ମୁଣ୍ଡରେ ଦେବ । ପେଟକୁ ଉପାୟ—ଘୋଡ଼ାଲୁଣ; ଧାରଙ୍କାଡେଙ୍ଗ, ବେଙ୍ଗୁଆ ମୂଳ ସବୁ ଗୁଣ୍ଡ କରି ପାଣିରେ ଗୋଳା କରି ଖୁଆଇବ । ଏହିପରି କଲେ ରୋଗ ସାତ ଦିନରେ ଭଲ ହେବ ।

## ବେତପଲନ୍ତ୍ର ବାତ ।

ଘୋଡ଼ା ବଡ଼ ସାହସ କରଇ, ଉଚ୍ଚ ଗୋଡ଼ରେ ଠିଆ ହୁଅଇ, ଘୋଡାର ଦୁଇ ଆଖି ଶୁକ୍ଳ ଦିଶଇ । ଏପରି ହେଲେ ବେତପଲନ୍ତ୍ର ବାତ ବୋଲି ଜାଣିବ । ଇହିଁକ ଉପାୟ—ଗଜପିପ୍ପଳ, ଅଶ୍ୱଗନ୍ଧ ତପ୍ସୁଣୀ ସବୁ ଗୁଣ୍ଡ କରି ମହୁରେ ତଳଟି ବେଲ ପ୍ରମାଣେ ଗୁଳା କରି ଖୁଆଇବ, ଗରମ ପାଣି ପିଇବାକୁ ଦେଉଥିବ । ଏପରି ସାତ ଦିନ କଲେ ଉକ୍ତ ରୋଗ ଭଲ ହୁଅଇ ।

## ଶିରଟେଣା ବାତ ।

ଘୋଡ଼ା ଶିର ପାଡ଼ଇ, ମୁଣ୍ଡ ଟେକଇ ନାହିଁ, ଆହାର ଛାଡ଼ିଦିଅଇ,

ନେତ୍ର ନୀଳବର୍ଣ୍ଣ ଦିଶଇ । ଏମନ୍ତ ଲକ୍ଷଣ ଥିଲେ ଶିରଃଶୂଳ ବାତ ବୋଲି ଜାଣିବ । ତାହାର ଔଷଧ—ପାତାଳଭେଦନ, କୁଡଚି, ନାଗ-ବେଲି, ଗୋଖର, ଏ ସବୁ ଗରମ ପାଣିରେ ବାଟି ଗୁଳା କରି ଖୁଆଇବ । ଏପରି କଲେ ସାତ ଦିନରେ ଘୋଡ଼ା ରୋଗରୁ ମୁକ୍ତ ହେବ ।

ଜଳଗ୍ରା ବାତ ।

ଘୋଡ଼ା ଖର ତ୍ରାସ ନ ସହଇ, ଦେହ ତାତି ଥାଇ, ପାଣି ଦେଖିଲେ ପାଣିରେ ଶୋଇପଡ଼ଇ । ଏପରି ହେଲେ ଜଳଗ୍ରା ବାତ ବୋଲି ଜାଣିବ । ତହିଁର ଉପାୟ—ସହସ୍ରମୂଳ, ଶତାବରୀ, ଖଣ୍ଡ, ମରଡ଼ଫଳାସ, କଦଳୀଚେର ବାଟି ଖୁଆଇବ । ସାତ ଦିନରେ ରୋଗ ଭଲ ହେବ ।

ଚଳନ୍ତ୍ର ବାତ ।

ରୋଗ ଅସିଲେ ପଡ଼ୁଥାଇ ପୁଣି ଉଠୁଥାଇ ଓ କମ୍ପୁଥାଇ, ଖରନଶ୍ୱାସ କରୁଥାଇ । ଏପରି ଅଶ୍ୱ ହେଲେ ଚଳନ୍ତ୍ର ବାତ ବୋଲି, ଜାଣିବ । ତହିଁର ଉପାୟ—ବୋଳ, ପାତାଭେଦ ଗୋଲ, ସୈନ୍ଧବ ଲୁଣ, ଘୋଡ଼ାଲୁଣ, ଗୁଗୁଳ ସବୁ ବାଟି ଗୁଳା କରି ଖୁଆଇବ । ଏପରି କଲେ ସାତ ଦିନରେ ଭଲ ହୋଇଯିବ ।

ଜଙ୍ଘ ବାତ ।

ଘୋଡ଼ାର ବାଗ ଧରି ଝିଙ୍କିଲେ ଶାଳରୁ ବାହାର ନ ହୁଅଇ, ସ୍ଥିର ପାଦ ପକାଇ ନାହିଁ । ଘାସ ପାଣି ଛାଡ଼ି ଦିଅଇ, ଏପରି ହେଲେ ଜଙ୍ଘ ବାତ ବୋଲି ଜାଣିବ । ତହିଁର ଉପାୟ—ଭୂଇଁନାଗ, ସରଳ କାଠ, ସୈନ୍ଧବଲବଣ, ଗୁଗୁଳ; ଲହୁଣୀ ସବୁ ଘଣ୍ଟି କରି ସୋରିଷ-ତେଲରେ ଗୁଳା କରି ଖୁଆଇବ । ଏପରି କଲେ ସାତ ଦିନରେ ରୋଗ ଭଲ ହୁଅଇ ।

## ବାତ୍ୱାରକଣସ୍ ରୋଗ ।

ଘୋଡ଼ାର ନାସିକାରୁ ପାଣି ବହୁଥାଏ, ପାଣି ଅଧେ ଧଇଛ, ଛୁଙ୍କଇ । ଏପରି ହେଲେ ଉପରୋକ୍ତ ରୋଗ ବୋଲି ଜାଣିବ । ତହିଁର ଉପାୟ—ଶୁଣ୍ଠି, ପିପଳି, ଜଳାଙ୍କର, ନିମ୍ବପତ୍ର, ବାଇଥ ଯୁଆଣି କରି ଖୁଆଇବ । ଏପରି କଲେ ସାତ ଦିନରେ ରୋଗ ଭଲ ହୋଇବ ।

## ପରସ ରେନ୍ଦ୍ର ।

ଘୋଡ଼ାର ଗୋଡ଼ ଟାପୁ ତଳ ମାଉଁସ ଫୁଲଇ, ରସ ଗଳଇ, ଘୋଡ଼ା ଚାଲି ପାରଇ ନାହିଁ; ଏହିପରି ହେଲେ ପରସରେନ୍ଦ୍ର ବୋଲି ଜାଣିବ । ତାହାର ଉପାୟ—ଘୋଡ଼ାକୁ ବାଲିରେ କୋହିଲେ ପାଣି ବହୁଥିବା ନଦୀରେ ଚଳାଇବ, ଟାପୁ ତଳେ ଯେଉଁ ମାଉଁସ ଫୁଲିଥିବ ଲୁହା ତତାଇ ତାକୁ ପୋଡ଼ିବ, ଗୋଡ଼ତଳେ କଷା ବାଲି ପକାଇ ବାନ୍ଧିବ, ଏପରି କଲେ ପରସରେନ୍ଦ୍ର ଭଲ ହୁଅଇ । ଅନ୍ୟପ୍ରକାର—ପିଆଜ, ଅଙ୍କୁଲି, ଅଶ୍ୱମୂଳ, ମହୁଲ, ବେଗୁନିଆଁ ପତ୍ର, ଡ଼ାଙ୍କାଚ; ଏହା ଛେଚି ବାନ୍ଧିଲେ ଭଲ ହୁଅଇ ।

## ମଥା ରୋଗ ।

ଘୋଡ଼ା ନାକ ଫୁରୁଡ଼ାଇ, ଥୋମଣି ତଳକୁ ତଷଇ; ଏପରି ହେଲେ ମଥା ରୋଗ ବୋଲି ଜାଣିବ । କଣ୍ଠାସ ନ ଯାଇ । ତାହାର ଉପାୟ—ରକ୍ତଚନ୍ଦନ, ତେଜପତ୍ର, କୁଆଁରିପତ୍ର ବାଟି ଦେବ । ଏପରି ସାତ ଦିନ କଲେ ଏ ରୋଗ ଭଲ ହୁଅଇ । ଅନ୍ୟପ୍ରକାର—ଲୁଣ, ଅଦା, ବାଇଥ, ଯୁଆଣି, ରସୁଣ ଏହି ସମାନ ଘୋଡ଼ଷ ତେଲ ମିଶାଇ ଖୁଆଇଲେ ଭଲ ହୁଅଇ ।

## ରକ୍ତବାତ ।

ଘୋଡ଼ା ଦେହଯାକ ଫୋଟକା ହୁଅଇ, ଦୁଇ ଛଅ ଦିନ ଗଲେ

ସେ ଫୋଟକ ନାଯାଇ ଘା ହୋଇଯାଏ, ବହୁତ ଦୁର୍ଗନ୍ଧ ହୁଏଇ, ତେଣୁ ରକ୍ତ ପଡ଼ ଦିଶୁଥାଇ । ଏପରି ହେଲେ ରକ୍ତବାତ ବୋଲି ଜାଣିବ । ତହିଁର ଉପାୟ—ରକ୍ତଚନ୍ଦନ, ତେଜପତ୍ର, ଖୁଆଁରପତ୍ର ଏ ସମସ୍ତ ବାଟି ବେଲ ପ୍ରମାଣେ ଗୁଳା କରି ଖାଇବାକୁ ଦେବ, ଆଉ ବାହାର ଘାରେ ରକ୍ତଚନ୍ଦନ ଲେପ ଦେବ । ଏପରି କଲେ ସାତ ଦିନରେ ଭଲ ହେବ ।

ଅନ୍ତ୍ରବାତ ।

ଘୋଡ଼ା ମନ୍ଦ୍ୟପର ଅଖି ଲେଉଟାଇ ପଡ଼ିଥାଇ, ଦାନା ପାଣି କିଛି ଛୁଏଁ ନାହିଁ, ଖରନିଶ୍ୱାସ ଛାଡୁଥାଇ । ଏପରି ହେଲେ ଅନ୍ତ୍ରବାତ ବୋଲି ଜାଣିବ । ତହିଁର ଉପାୟ—ଚିତାପାରୁମୂଳ, କରଞ୍ଜଫଳ ଏବଂ ଚେର, ଚମ୍ପାକଢ଼ି ଏ ସବୁ ବାଟି ସୋରିଷ ତେଲରେ ମିଶାଇ ସୁଅଣି, ଲୁଲୁଅଁଚେର, ଗୁଡ଼ ପିଅଇଲେ ସାତ ଦିନରେ ରୋଗ ଭଲ ହୁଅଇ ।

ଉଦରକଣ୍ୟ ରୋଗ ।

ଘୋଡ଼ା ଦିନକୁ ଦିନ ଦୁର୍ବଳ ହୁଅଇ, ନେତ୍ର ମଳିନ ଦିଶଇ, ଘର-ଘର ନିଶ୍ୱାସ ଛାଡ଼ଇ । ଏପରି ହେଲେ ଉପରୋକ୍ତ ରୋଗ ବୋଲି ଜାଣିବ । ତହିଁର ଉପାୟ— ଗୋଡ଼ରେ ବାଳି ବାନ୍ଧିବ, ପଦ୍ମରଚିତା ମୂଳ, ଘିଲଅଁଚେର, ଶଙ୍ଖଚୂନା ଏ ସବୁ ବାଟି ପାଣିରେ ଗୋଳି ପାଦରେ ମର୍ଦ୍ଦନ କରିବ । ସାତ ଦିନରେ ରୋଗ ଭଲ ହେବ ।

ଖଣ୍ଡିରୋଗ ।

ଆହାର ନ କରଇ, ଦୁର୍ବଳ ହୁଅଇ । ଏପରି ହେଲେ ଖଣ୍ଡିରୋଗ ବୋଲି ଜାଣିବ । ତହିଁର ଔଷଧ—କଷା ଗଞ୍ଜାଇପତ୍ର ପୋଡ଼ି ଘାସ-ପୂଡ଼ା ଭିତରେ ପୂରାଇ ଖୁଆଇବ । କୁକୁଡ଼ାଡିମ୍ବ ପୋଡ଼ି ଘିଅ ମଦର ବାସି ପାଣି ସବୁ ବାଟି ବେଲ ପ୍ରମାଣେ ଖୁଆଇବ । ଏପରି ପନ୍ଦର ଦିନ କଲେ ରୋଗ ଭଲ ହୁଅଇ । ଅନ୍ୟ ପ୍ରକାର—ଶଙ୍ଖଭସ୍ମମାନ କେତ

ଖୁଆଇଲେ ଭଲ ହୁଅଇ । ଅନ୍ୟ ପ୍ରକାର—ଖଜୁରି ମଦ ଖୁଆଇଲେ ଭଲ ହୁଅଇ ।

## ଚକ୍ଷୁପୋଥ ।

ଚକ୍ଷୁରେ ବାଲ ସ୍ୱରୂପ ପୋକ ହୁଅଇ, ଘୋଡ଼ା ନ ଗୃହ୍ଣେ ଘୋଡ଼ାକୁ ବାଟ ନ ଦିଶିଲେ ଚକ୍ଷୁପୋଥ ରୋଗ ବୋଲି ଜାଣିବ । ତହିଁର ଉପାୟ—ମହୁ, କର୍ପୂର, ବଳାସଇନ୍ଧବଲବଣ ବାଟିବ ଓ ଲେପ ଦେଉଥିବ । ଏପରି କଲେ ଆଖିର ପୋକ ମରଇ ଓ ନିର୍ମଳ ଆଖି ଦିଶଇ ଓ ରୋଗ ଭଲ ହୋଇଯାଏ ।

## ନାକହଡ଼ା ରୋଗ ।

ଘୋଡ଼ା ସବୁବେଳେ ଧଂସୁଥାଇ, ମୁହଁ ଲେଞ୍ଚ ଫୁଲଇ, ଘୋଡ଼ା ଯେଉଁ ଘାସ ଚରଇ ତାହା ଭଲକରି ଖାଇ ପାରଇ ନାହିଁ, ଦାନା ନ ଖାଇ, ଯେବେ ଦାନା ପାଣି ଖାଇଲେ ଦେହରେ ଲାଗଇ ନାହିଁ, କ୍ରମାନ୍ତ ଦୁର୍ବଳ ହୋଇଯାଏ, ନାକର ମାଂସ ଫୁଲିଯାଏ । ଏପରି ହେଲେ ନାକହଡ଼ା ବୋଲି ଜାଣିବ । ତହିଁର ଉପାୟ—ନାକ ଉପରେ ଯେଉଁ ହାଡ଼ ଥାଏ ସେ ହାଡ଼କୁ ନାକ ଦୁଇ ପାଖରୁ ଉପର ଚମ ଚିରି ସେ ନାକହାଡ଼ କାଟିବ, ସେ ଘାରେ ଜମ୍ବୁପତ୍ର ବାଟି ଲେପ ଦେବ, ଘୋଡ଼ାକୁ ଗରମମସଲା ଖୁଆଇବ । ଏପରି କଲେ ସେ ରୋଗ ଭଲ ହୁଏ ।

## ସମଖଣ୍ଡିକାରୁ ।

ଘୋଡ଼ାର ଦେହରେ ମୂତ, ବଡ଼, ଯୋଉଷ ପରି ବାହାରଇ, ସାନ ଜାନ୍ଦୁଲ ପ୍ରାୟ ମଧ୍ୟ ହୁଅଇ । ଏରୂପ ହେଲେ ତହିଁର ଉପାୟ—ଭୂଇଁଚମ୍ପା, ରସୁଣ, ଗନ୍ଧକ, ସାହାଡ଼ାମୂଳ, ସୋମରାଜ ସମଭାଗରେ କୁଟିବ,

ହଳଦୀଗୁଣ୍ଡ ମିଶାଇ ତେଲ ପ୍ରମାଣେ ଗୁଳା କରି ଖୁଆଇବ । ଏପରି କଲେ ପନ୍ଦର ଦିନରେ ରୋଗ ଭଲ ହୁଏ ।

## ପାପଡ଼ାକାଉଁ ।

ଘୋଡ଼ା ଦେହରେ ଚକା ଚକା ହୋଇ କାଉ ଉଠିଲେ, କଣ୍ଡୁ କରଇ । ଏପରି ହେଲେ ପାପଡ଼ା ରୋଗ ବୋଲି ଜାଣିବ । ତାହାଙ୍କ ଉପାୟ—ବେଲମୂଳ, ଅରଖମୂଳ, ସୋମରାଜ, ରକ୍ତଚନ୍ଦନ, ଘୋଡ଼ାଲବଣ ସମଭାଗରେ କୁଟି ସୋରିଷ ତେଲରେ ତେଲପ୍ରମାଣେ ଗୁଳା କରି ଖୁଆଇବ । ଏପରି କଲେ ଦଶ ଦିନରେ ରୋଗ ଭଲ ହୋଇଯିବ ।

## ମୁଣ୍ଡିକା ରୋଗ ।

ଗୋଡ଼ ଗଣ୍ଠିରେ, ମୁଣ୍ଡରେ, ମୁଣ୍ଡ ମୁଣ୍ଡ ପରି ବଉଦୋଳ ଧରି ବାହାରଇ, ଅଖିକୁ କଷ୍ଟ ଦିଶଇ ନାହିଁ, ଜଳକା ପରି ହୋଇଯାଏ । ଏପରି ହେଲେ ମୁଣ୍ଡିକା ବା ଜଲକା ରୋଗ ମଧ୍ୟ କହାଯାଏ । ତାହାର ଉପାୟ—ଅଶ୍ୱଗନ୍ଧ, ମୟୂରଚୂଳ, ଅମହର, ମରିଚ, ସୋମରାଜ, ଚଉଁଆଳୁ ମୂଳ, ଅଙ୍କୁଲ ଚେର ଏ ସବୁ ଗୁଣ୍ଡ କରି ଖୁଆଇବ । ଲେମ୍ବୁ ପ୍ରମାଣେ ଗୁଳା କରି କେରଣ୍ଡାମାଛ ଗୋଟିକର ପିତ୍ତ, ସିନ୍ଦୂର ୫ ଚନା, ବେଲମଞ୍ଜି ୫ ଚନା, ଲେମ୍ବୁରସରେ କଜ୍ଜଳ ପରି ଚକ୍କଣ କରି ବାଟିବ, ପଛ ଦୁଇ ଅଖିରେ ଲେପ ଦେବ । ଏପରି କଲେ ରୋଗ ଭଲ ହୁଏଇ ।

## ଅଖିଫୁଲ ।

ଅଖିଫୁଲକୁ ଉପାୟ—କୋଇଲେଖାମଞ୍ଜି, ଠାଙ୍ଗଣୀ ପୋଡ଼ିକରି ତାହାର କ୍ଷାର ଗଇସଫଳ ରସରେ ଚକ୍କଣ କରି ବାଟି ଦୁଇ ଅଖି ପତାରେ ଲଗାଇବ । ଏପରି କଲେ ଅଖି ରୋଗ ଭଲ ହୁଏଇ ।

## ମଳକଣ୍ଟକ ।

ଘୋଡ଼ା ମଳ ନ କରଇ ଅଥବା କଲେ ବଡ଼ କଷ୍ଟରେ ମଳଦ୍ୱାରରେ ବଡ଼ ଖଜୁରି ପରି ବାହାରଇ, ମଳ କରି ନ ପାରଇ, ଆହାର ନ ଖାଇ ସ୍ତମ୍ଭୀଭୂତ ହୋଇ ଠିଆ ହୋଇ ରହୁଥାଏ । ଏପରି ହେଲେ ମଳକଣ୍ଟକ ବୋଲି ଜାଣିବ । ତହିଁକ ଉପାୟ—ଅଶ୍ୱଗନ୍ଧ, ମରିଚ, ଲୁଣ ଏ ତିନି ପଦାର୍ଥକୁ କୁଟି କାଞ୍ଜିପାଣିରେ ଚକଟି ଘୋଡ଼ାକୁ ଖୁଆଇବ । ଗୋବର ଗୋଳିବ, ଗୋଟାଏ ବାଉଁଶ ନଳ ଗୋଟିକରେ ପୋଷେ ଗୋବର ପାଣି ଦେଇ ମଳଦ୍ୱାରରେ ଉକ୍ତ ନଳକୁ ପୁରାଇଦେବ, ଯେମନ୍ତ କି ଗୋବର ପାଣି ମଳଦ୍ୱାର ଭିତରେ ପ୍ରବେଶ କରି ପାରେ । ବେଙ୍ଗୁନିଆ ମୂଳ, ବାଇଗଣ ମୂଳ, ପୋଟଳମୂଳ, ମଧୁକାକୁଡ଼ି, ଗମ୍ଭାରିମୂଳ ଏକତ୍ରରେ ବାଟି ପିଆଇଦେବ, ଘୋଡ଼ାକୁ ଚଲାଇବ । ଏପରି ୧୦ ଦିନ କଲେ ରୋଗ ଭଲ ହୁଏ ।

## ବ୍ୟାଧି ରୋଗ ।

ଘୋଡ଼ା ସୁସ୍ଥ ହୋଇ ଆହାର ପାଣି ଛାଡ଼ଇ । ଏପରି ହେଲେ ବ୍ୟାଧି ରୋଗ ବୋଲି ଜାଣିବ । ତହିଁକ ଉପାୟ—ମଇରଗିରିଅକୁ ଛାରଣ କରିବ ଓ ଟାଙ୍ଗଣା ମଧ ନିଆଁରେ ଜାରି ଏ ଦୁଇଥିରୁ ଏକ ଏକ ମସା; ଗନ୍ଧସୁର, ଅହମାଣ୍ଡ, ରସୁଣ ସବୁ କୁଟି ହଳଦୀଗୁଣ୍ଡ ମିଶାଇ ଗୁଳା କରି ଖୁଆଇବ ! ରସୁଣ ବେଶି କରି ଥିବ । ଏପରି ସାତ ଦିନ କଲେ ଉପରୋକ୍ତ ରୋଗ ଭଲ ହୁଅଇ ।

## ଅଜାଣ ଶୂଳ ।

ତହିଁକ ଉପାୟ—ମନୁଷ୍ୟ ପ୍ରସ୍ରାବରେ ଲବଣ ଯଥଣି ବାଟି ଖୁଆଇଲେ ଅଜାଣଶୂଳ ରୋଗ ଭଲ ହୁଅଇ ।

## ଶ୍ୱାସ ରୋଗ ।

ଏହାଂର ଉପାୟ—ଖଣ୍ଡଜଲ, ଅଇଁଳା, ଜଡାଘ ବାସିପାଣିର ବାଟି ଖୁଆଇଲେ ଶ୍ୱାସ ରୋଗ ଆରୋଗ୍ୟ ହୁଏ ।

## ଅନ୍ତ୍ରଶୂଳ ।

ଘୋଡ଼ା ଧାଁଇଲେ ଝମ୍ପା ଖୁଲିଲେ ବଡ଼ ଫୁଟଇ । ଏତେ ଲକ୍ଷଣ ଥିଲେ ଅନ୍ତ୍ରଶୂଳ ବୋଲି ଜାଣିବ । ଏହାଂର ଉପାୟ—ମହା ସିଦ୍ଧମୂଳ, ଓହଡ଼ି ମୂଳ, ହଳଦ ଏ ସବୁ କାଟି ବେଲ ପ୍ରମାଣେ ଖୁଆଇଲେ ସାତ ଦିନରେ ରୋଗ ନାଶ ଯାଏ ।

## ଅଜୀର୍ଣ୍ଣ ରୋଗ ।

ଅଜୀର୍ଣ୍ଣ ହେଲେ ଘୋଡ଼ାର ପେଟ ଫୁଲଇ । ଏହାଂ ପ୍ରତି ଉପାୟ—ଯୁଆଣି, ହଳଦ କୁଟିକରି ଖୁଆଇଲେ ଉପରୋକ୍ତ ରୋଗ ଭଲ ହୁଏ ।

## ତାଳୁରୋଗ ।

ଘୋଡ଼ାର ତାଳୁ ଭିତରେ ଶୋଷ ହେଲେ ତାହାକୁ ତାଳୁ ରୋଗ ବୋଲାଯାଏ । ଏହାଂର ଉପାୟ—ଘୋଡ଼ାଲୁଣ, ଅଳକ୍ଷ୍ମୀ, କାଞ୍ଜିପାଣି ଦେଇ ହାତରେ ନେଇ ଶୋଷ ହେବାଠାରେ ଘସିଲେ ଉପରୋକ୍ତ ରୋଗ ଭଲ ହୁଏ ।

## ତାଳୁଅଜୀର୍ଣ୍ଣ ।

ଘୋଡ଼ାର ଜିଭ ଜଳଙ୍କ ପରି ବର୍ଣ୍ଣ ଦିଶିବ । ତାହାହେଲେ ତାଳୁ-ଅଜୀର୍ଣ୍ଣ ବୋଲି ଜାଣିବ । ଏହାଂର ଔଷଧ—ମଧୁକାକୁଡ଼ି, ସହସ୍ରମୂଳ, ଖଣ୍ଡ, ମହୁ ମିଶାଇ ଖୁଆଇଲେ ଉପରୋକ୍ତ ରୋଗ ଭଲ ହୁଅଇ । ଅନ୍ୟ ପ୍ରକାର—ଭୂଇଁକଖାରୁ, ଖଣ୍ଡଧୁଆ ମୂଳ, ମରିଚ, ଧନିଆଗୁଣ୍ଡି ଏହାକୁ ଖୁଆଇଲେ ମଧ୍ୟ ଭଲ ହୁଅଇ ।

## ତୀକ୍ଷଣ ରୋଗ ।

ଘୋଡ଼ାର ଦେହ ତୀକ୍ଷ୍ଣ ଗରମ ହେଲେ ଶୁଖିଯାଇ ଅଜୀର୍ଣ୍ଣ ହୁଏଇ । ତହିଁର ଉପାୟ—ପାନକମୁଥା ମୂଳ ଏବଂ ଫଳ, ଖଣ୍ଡ ମିଶାଇ ଖୁଆଇଲେ ଘୋଡ଼ା ଦେହର ତୀକ୍ଷଣ ରୋଗ ଭଲ ହୁଏଇ ।

## ମଳବନ୍ଧର ଅନ୍ୟ ପ୍ରକାର ।

ଘୋଡ଼ାର ଗୁହ୍ୟଦ୍ୱାର ଜଳି ଫୁଲଇ । ତାହାହେଲେ ଉପରୋକ୍ତ ରୋଗ ବୋଲି ଜାଣିବ । ତହିଁର ଉପାୟ—ଫୁଲଥିବା ଜାଗାକୁ ଖାଉବ, ଲୁଣ, ଟେଙ୍କରସ, କାଞ୍ଜିପାଣି ଏ ତିନ ପଦାର୍ଥକୁ ଖାଉଥିବା ଜାଗାରେ ବାନ୍ଧିବ । ଏରୂପ କଲେ ଏ ରୋଗ ଭଲ ହୁଏଇ ।

## କଣ୍ଠକାଣ୍ଡ ।

ସୁନାରଫଳ ପୋଡ଼ିକରି ବନ୍ଧାକ ଦୁରୁଣା ପଙ୍କ ମିଶାଇ ଲେପ ଦେବ । ଏରୂପ କଲେ ଉପରୋକ୍ତ ରୋଗ ଭଲ ହୁଏଇ । ଅନ୍ୟ ପ୍ରକାର—ସର୍ଜି, ଶ୍ୱେତଦୁବ, ନଡ଼ିଆ ଗୋଟିଏ, ଲଙ୍କାକାଲି ରସରେ ବାଟି ଲେପ ଦେବ ।

## ମୋହ ରୋଗ ।

ନେତ୍ର ହଳଦିଆ ଦିଶୁଥିବ, ପିସାବ କଲେ ଘନ ଘନ ଶୁଭୁଥିବ । ଏପରି ଦିଶିଲେ ଉପରୋକ୍ତ ରୋଗ ବୋଲି ଜାଣିବ । ତହିଁର ଉପାୟ—କଦଳୀବୃକ୍ଷର କଅଁଳ ମୂଳ କାଢ଼ି ଛେଚି ରସ ବାହାର କରିବ, ପଣ୍ଡାଗ୍ ଖଣ୍ଡ, ମନତଗୁଣ୍ଡ ମିଶାଇ ବଡ଼ ସକାଳୁ ସେ ପାଣି ପିଆଇବ । ଏପରି କଲେ ଯାତ ଦିନରେ ଉପରୋକ୍ତ ରୋଗ ଭଲ ହୁଏ ।

## ରକ୍ତମୂତ୍ର ।

ଘୋଡ଼ା ରକ୍ତ ମୂତିଲେ ତହିଁର ଉପାୟ—ଧୂଆମୂଗ ୨ ସେର, ଚାଉଳ ୧ ସେର ବଡ଼ସକାଳୁ ଦେବ । ଉପରନ୍ତ ହଳଦିଗୁଣ୍ଡ,

ମଇଁଚ, ଯାଚପାନ, ଜବାଫ ଓ ଗୁଡ଼ ଏକତ୍ରରେ କୁଟି ଗୁଳା କରି ଖୁଆଇବ, କାକୁରପାଣି ପିଆଇବ, ମୁଗ ସିଝାଇ ଚାରିଟି ଦାନା ଦେବ, ଖଗ୍ୱରେ ବାନ୍ଧିବ ନାହିଁ, ଗରମମସଲ୍ଲା ଦେବ ନାହିଁ । ଏପରି ପାଞ୍ଚ ଦିନ କଲେ ଉପରୋକ୍ତ ରୋଗ ଭଲ ହୁଏ ।

## ରକ୍ତବାଡ଼ି ।

ଘୋଡ଼ା କିମ୍ବା ଘୋଡ଼ୀ ନାକରକ୍ତମିଶା ଝାଡ଼ାଚକୁ କରୁଥିଲେ ଲୁଚାଉଥିବ, କ୍ଷୀଣ ହୋଇ ଯାଉଥିବ, ରକ୍ତନାଳ ମିଶାଇ ଲଦ କରୁଥିବ, ଲଦ କଲାବେଳେ ବଡ଼ କଲ୍‌ବଲ୍ ହେଉଥିବ । ଏପରି ହେଲେ ଉପରୋକ୍ତ ରୋଗ ବୋଲି ଜାଣିବ । ତାହାର ଉପାୟ—ଯୋମଣ୍ଡକମଞ୍ଜି ୨ ଭାଗ, ଗନ୍ଧପୁର ୧ ଭାଗ, ରାସନା ୧ ଭାଗ, ଲବଙ୍ଗ ପିପଳି ୨ ଭାଗ, ହଳଦ ୧ ଭାଗ; ଏ ସବୁ କୁଟିକରି ପାଣିରେ ଚାରିଟି ଦୁଇ ଓଳି ଖୁଆଇବ । ଏପ୍ରକାର ଗୁଡ଼ି ପାଞ୍ଚ ଦିନ କଲେ ରୋଗ ଭଲ ହୁଏ ।

## କାମଜ୍ୱର ।

ଘୋଡ଼ା ହେଉ ବା ଘୋଡ଼ୀ ହେଉ କାମ ଅରତରେ ଜ୍ୱର କଲେ ଦେହ ସନ୍ତପରେ ନଥିଁ ପରି ତାଉଥାଏ, ଦାନା ପାଣି ସବୁ ଛାଡ଼ିଇ, ସ୍ତମ୍ଭୀଭୂତ ହୋଇ ଛିଡ଼ା ହୋଇଥାଏ । ଏପରି ହେଲେ ବର ହେବେଦନା ବୋଲି ଜାଣିବ । ଅଗଣ ପଛୁକି ଠାପୁ ମାରଇ, ମୁହଁ ଖୋଉଚ, ଉପରକୁ ମୁହଁ କରି ଠକ ଠକ କରୁଥାଇ । ତାହାର ଉପାୟ—ଘୋଡ଼ା ଆଗରେ ଘୋଡ଼ୀଟାଏ ବାନ୍ଧିବ, ଘୋଡ଼ୀ ହୋଇଥିଲେ ଘୋଡ଼ାଟାଏ ବାନ୍ଧିବ । ଦୁଧ ୪ ସେର, ଖଣ୍ଡ ଅଧ ସେର ପିଆଇବ । ଏପରି ୪।୫ ଦିନ କଲେ ଜ୍ୱର ଶାନ୍ତ ହୁଏ ।

## ଛଚମା ରୋଗ ।

ପେଟ ଶିଳ ପରି ବଢ଼ୁଥିବ ଓ ଝାଣିଥିବ । ଏପରି ହେଲେ ଛଚମା

ରୋଗ ବୋଲି ଜାଣିବ । ତହିଁର ଉପାୟ—ସଇନ୍ଧବ ଲୁଣ, ଗୁଇଁକାଂଠ ସମାନ କରି ଗୋମୂତ୍ର ଭିତରେ ସିଝାଇବ, ସିଝାଇଲେ ଶୀତଳ କରି ଦେଲେ ପ୍ରମାଣେ ଖୁଆଇଲେ ଉପରୋକ୍ତ ରୋଗ ଭଲ ହୁଏଇ ।

## ଚଳନ୍ତିକଚମ୍ପା ।

ଘୋଡ଼ା ପେଠ ଭିତରେ କଣ୍ଟିଛ ପରି ଗୁଳା ଗୋଟିଏ ବୁଲୁଥାଏ । ପେଠ ଶୂନ୍ୟ ହେଲେ ବହୁତ ଡିନ୍ଦଇ । ଏପରି ହେଲେ ଉପରୋକ୍ତ ରୋଗ ବୋଲି ଜାଣିବ । ତହିଁର ଉପାୟ—ଦେବଦାରୁ, ଗଜପିପଳ, ମରିଚ, ଠାଙ୍ଗଣା, ଖାର, ଘୋଡ଼ାଲୁଣ ଏ ସବୁ କାଞ୍ଜିପାଣିରେ ବାଟିବ, କଡ଼ିଏ ପ୍ରମାଣେ ଖୁଆଇବ । ଏପରି ସାତ ଦିନ କଲେ ଉପରୋକ୍ତ ରୋଗ ଭଲ ହୁଏଇ ।

## କର୍ଣ୍ଣଶାନ୍ତି ଶୂଳ ।

ଘୋଡ଼ାର ଦୁଇ କାନ ପାଚକରି ବଡ଼ ଦୁର୍ଗନ୍ଧ କରଇ । ଏପରି ହେଲେ ଉପରୋକ୍ତ ରୋଗ ବୋଲି ଜାଣିବ । ତହିଁ ପ୍ରତି ଉପାୟ— ଲଙ୍କାମରିଚ, ସିଜୁଅଗି, ତୁ-ସୀପତ୍ର, କେଳରସ, ଗନ୍ଧକ, ରସୁଣ, ସୋରିଷତେଲରେ ଚୂର୍ଣ୍ଣ କରି ବାଟି ସୋରିଷତେଲରେ ବହଳ କରି କାନରେ ପକାଇବ । ଏପରି ଅଠ ଦଶ ଦିନ କଲେ କର୍ଣ୍ଣଶାନ୍ତି ରୋଗ ଭଲ ହେବ । ସୈନ୍ଧବଲୁଣ, କୁଡ଼, ବଚ, ମରିଚ, ସିନ୍ଦୂର, ଅର୍କପତ୍ର ରସରେ ତେଲ ରାନ୍ଧି ପକାଇବ ।

## ଅଙ୍କିଷ୍ଟ ରୋଗ ।

ଦନ୍ତମୂଳ ଫୁଲଇ ଓ କଳାଶିରା ଦୁଇ ଗୋଟି ହୁଏଇ, ବଡ଼ ତ୍ରାସ କରଇ, ଘାସ ପାଣି ଖାଇ ନ ପାରଇ । ଏପରି ହେଲେ ଉପରୋକ୍ତ ରୋଗ ବୋଲି ଜାଣିବ । ତାହାର ଔଷଧ—ପାରିଜାତକ, ଯବାନି, କଳାଜିରା, ଘୋଡ଼ାଲୁଣ ସମାନରେ ବାଟି ଦେଲ ପ୍ରମାଣେ ଖୁଆଇବ । ଏପରି ସାତ ଦିନ କଲେ ରୋଗ ଭଲ ହେବ ।

## ଚମଦଳା ।

ଚମଦଳା ହେଲେ ଘୋଡ଼ାର ଦେହଯାକରେ ଚକ୍ଲଡ଼ା ଚକଡ଼ା ହୋଇ ଚମ ଉକୁଟଇ, ଘା ହୋଇଯାଏ । ଏପରି ହେଲେ ଚମଦଳା ରୋଗ ବୋଲି ଜାଣିବ । ତହିଁର ଉପାୟ—ବଉଳ ଗଛର ଛେଲି ଓ ତାହାର ମଞ୍ଜିର ରସ, କଳାଜିରା, ରସୁଣ, ସୋରିଷତେଲରେ ବାଟି ଗୁଳା କରି ଚମଦଳା ଉପରେ ଲେପ ଦେବ । ଜମ୍ବୁପତ୍ର, ଗାଈଲହୁଣୀ, ହଳଦ, ରସୁଣ, ଦୁଧ, ଭୂଇଁନମ୍ବ ବାଟି ଦେଲ ପ୍ରମାଣେ ଗୁଳା କରି ଖୁଆଇବ । ଏପ୍ରକାର ସାତ ଦିନ କଲେ ରୋଗ ଭଲ ହୁଅଇ ।

## ଜଳପିପି ରୋଗ ।

ଘୋଡ଼ାର ନେତ୍ର କଉଡ଼ିପରି ଦିଶଇ, ଚକ୍ଷୁ ପ୍ରକାଶଇ, ଶରଭର ହୋଇ ନିଶ୍ୱାସ ଛାଡ଼ଇ, ନ ଦିଶଇ, ଲେଣ୍ଡିଅ ବହଇ, ଘୋଡେଇ ବହଇ, ଥର ଥର ହୋଇ ପଡ଼ି ନ ପଡ଼ିଲା ପ୍ରାୟ ହେଉଥାଇ । ଏପରି ହେଲେ ଉପରୋକ୍ତ ରୋଗ ବୋଲି ଜାଣିବ । ତହିଁର ଉପାୟ—ଗୁଗୁଳ, ଚନ୍ଦନ, ଦେବଦାରୁ ସମାନରେ ବାଟି ଦେଲ ପ୍ରମାଣେ ଗୁଳା କରି ଖୁଆଇବ । ପାଞ୍ଚ ଦିନରେ ରୋଗ ଭଲ ହୁଅଇ । ଅନ୍ୟ ପ୍ରକାର—ବଚ, ବାହାଡ଼ା ମଞ୍ଜି ରସ, ମୁହଙ୍ଗା ମଞ୍ଜି, ହ'ଉନସ, ଏହା ଚିକ୍କଣ କରି ଲେପ ଦେଲେ ଭଲ ହୁଅଇ । ଅପରାଜିତା ମୂଳ, ଅଶ୍ୱଗନ୍ଧ, ବେଙ୍ଗାଣ୍ଡୀମାଛ, ଗୋଟିଏ ସିନ୍ଦୂର, ବେଲ ମଞ୍ଜି, ଏହା ସମାନ ଭାଗରେ ବାଟି ଚକ୍ଷୁରେ ଲେପ ଦେବ ।

## ଗଣ୍ଡସିରୋଗ ।

ନେତ୍ର ହଳଦ ବର୍ଣ୍ଣ ଦିଶୁଥିଲେ ଗଣ୍ଡସିରୋଗ ରୋଗ ବୋଲି ଜାଣିବ । ତହିଁର ଉପାୟ—ହିଙ୍ଗୁଳ ୧୨ ତୋଳା, ସରଳକାଷ୍ଠ ଟଗର ୨ କରଷ, ଜମ୍ବୁକୋଳି ୨ କରଷ, ଗୃହଧୂମ ୨ କରଷ

ଚକ୍କଣ କରି ବାଟିବ, ଟେଲ୍ ପ୍ରମାଣେ ଗୁଳା କରି ଖୁଆଇବ । ଏପରି କଲେ୍ ସାତ ଦିନରେ ଭଲ ହୁଏ ।

## ଜଳଉଦରୀ ।

ଘୋଡ଼ାର ଦୁଇ ନେତ୍ର ଶୋଣ ବର୍ଣ୍ଣ ହୁଅଇ, ଅଳପ ସାଙ୍କୋଡ଼ି ଗଲ-ପରି ଦିସୁଥାଇ, ପାଣି ଖାଇଲେ୍ ଅଧେ ପାଣି ଖାଇ ପାରଇ ନାହିଁ, ଗାତ ଉପରେ ସବାର ହେଲେ ପ୍ରାଣ ଘୁଡ଼ିଗଲ ପରି ହୁଅଇ, ଗୁଳୁ ଗୁଳୁ ପଡ଼ିଇ ଉଠଇ । ଏପରି ହେଲେ୍ ଜଳଶୋଷିନ ରୋଗ ବୋଲି ଜାଣିବ । ତହିଁର ଉପାୟ—ଶୁଣ୍ଠି, ପିପଳି, ସୋମରାଜ ମଞ୍ଜି, ସାଲୁକା ମୁଣ୍ଡା, ଅଦାରସ, କେତକୀ ପତ୍ର, ହେଡଙ୍ଗି, ସମଭାଗ କରି ମହୁରେ ବାଟିବ, ଏ ବେଲ ପ୍ରକାରେ ଖୁଆଇବ । ଏପ୍ରକାର ସାତ ଦିନ କଲେ ରୋଗ ଭଲ ହୁଅଇ ।

## ଧାଇଁବନ୍ଧ ରୋଗ ।

ଘୋଡ଼ା ଧାଇଁଲାବେଳେ ଦୁଇ ଗୋଡ଼ରେ ଛଡ଼ା ହୋଇ କୋରଡ଼ା ମାଇଲେ ପାଦେ ଘୁଞ୍ଚଇ ନାହିଁ, ରୋଗକୁ ନ ଚିହ୍ନି ଘୋଡ଼ାକୁ ଖଣ୍ଡି ବୋଲି ମାଇଲେ୍ ଘୋଡ଼ାର ଦେହ ବଥା କରଇ ଓ ଦେହ ଫୁଲି ପ୍ରାଣ ନାଶ ଯାଇ । ତାହାର ଉପାୟ—ଗୁଲ୍ମଫଳର ରସ ୧ କରଷ, ଖଣ୍ଡ ୨ କରଷ, ଗମ୍ଭାରି ଫଳର ରସ ୧ କରଷ, ମରିଚ ୧ କରଷ, ସଇନ୍ଧବ ଲୁଣ ୧ କରଷ ଚକ୍କଣ କରି ବାଟି ଲେମ୍ବୁ ପ୍ରମାଣେ ଖୁଆଇବ । ଏପରି ସାତ ଦିନ କଲେ ରୋଗ ଭଲ ହୁଏ ।

## ହୃଦମାହୁ ।

ଘୋଡ଼ାର ବୁକୁ ଛାତି ଫୁଲଇ, ଅହାର ନ ଖାଇ ଦୁର୍ବଳ ହୋଇ ଯାଏ । ଏପରି ହେଲେ ହୃଦମାହୁ ରୋଗ ବୋଲି ଜାଣିବ । ତହିଁର ଔଷଧ—ମରିଚ, ବେଣଚାମୂଳ, ମହାକାଳମୂଳ, ଦାରୁଡ଼ିମୂଳ, ସମଭାଗ

କରି ବାଣ୍ଟିବ, ଶୋରିଷ ତେଲରେ ଗୋଳି ପିଆଇବ । ଏପ୍ରକାର ସାତ ଦିନ କଲେ ଉପରୋକ୍ତ ରୋଗ ବିନାଶ ହୁଏ ।

## ଫଦ୍ଦୁମଣ୍ଡଳ ରୋଗ ।

ଘୋଡ଼ାର ପେଟ ଭିତରେ ଗୋଟା ଗୋଟା ହୋଇଥାଏ, ରୋଗ ବାହାରକୁ ନ ଦିଶଇ, ଆହାର ନ ରୁଚଇ, ବଡ଼ କଲବଲ ହୁଉଥାଏ । ଏପରି ହେଲେ ଉପରୋକ୍ତ ରୋଗ ବୋଲି ଜାଣିବ । ତହିଁର ଔଷଧ—କଣ୍ଟିକପାଳିମୂଳ, ଘୋଡ଼ାଲୁଣ, ଗଜପିପଳି, ମହୁ ସମଭାଗ କରି ବାଟି ଖୁଆଇବ । ରୋଗ ସାତ ଦିନରେ ଭଲ ହେବ ।

## ଗଜବେଲ୍ ରୋଗ ।

ଘୋଡ଼ାର ମୁହଁ, ନେତ୍ର ଫୁଲଇ, ଲିଙ୍ଗ, କୋଷ ଫୁଲଇ । ଏପରି ହେଲେ ଗଜବେଲ୍ ରୋଗ ବୋଲି ଜାଣିବ । ତହିଁର ଉପାୟ— ଏକୋଇଶ ଦିନ ପର୍ଯ୍ୟନ୍ତ ଘୋଡ଼ାକୁ ଗହମ ରୋଟି ଖୁଆଇବ । ଏପ୍ରକାର କଲେ ଗଜବେଲ ରୋଗ ଭଲ ହୁଅଇ । ଅନ୍ୟ ପ୍ରକାର— ଦାସକେରଙ୍ଗା ପତ୍ର, ଡ଼ଙ୍କାର ପତ୍ର, ପିତାଶୁଖୁଆ, ଡେଙ୍ଗାବେଙ୍ଗ କୁଟି ଲୁଗାରେ ବାନ୍ଧି ମାଟିରେ ଲେପ ଦେଇ ଦେବ ।

## ଛଟକା ରୋଗ ।

ଘୋଡ଼ା ଦେହ ଚକା ଚକା ହୋଇ ଲୁମ ଉପୁଡ଼ଇ, ଚାଲି ପାରଇ ନାହିଁ । ଏପରି ହେଲେ ଛଟକା ରୋଗ ବୋଲି ଜାଣିବ । ତହିଁକି ଔଷଧ—ସହସ୍ରମୂଳ, ଗନ୍ଧଦମ୍ଭଣା, ଅଦା, ଗୁଡ଼, ଦ୍ରାକ୍ଷା, ହରଡ଼ା ସବୁ ଏକତ୍ରରେ କୁଟି ବେଲ ପ୍ରମାଣେ ଗୁଳା କରି ଖୁଆଇବ । ଏପ୍ରକାର କଲେ ସାତ ଦିନରେ ରୋଗ ଭଲ ହୁଅଇ ।

## ବାରମାସର ମସଲା ।

ଘୋଡ଼ାମାନଙ୍କୁ କେଉଁ ମାସରେ କି ମସଲାରେ କି ମସଲା ବେଶୀ ଦେବ । ମାର୍ଗଶିର, ପୌଷରେ ଘିଅ, ଲବଣ ଏକତ୍ର କର ଦେବ; ମାଘରେ ଲୁଣ, ଯଥାଣୀ ଏକତ୍ର କର ତେଲ ପ୍ରମାଣେ ଦେବ; ଫଗୁଣରେ ଗୁଡ଼, ଅଦା, ତେଲ ପ୍ରମାଣେ ଦେବ; ଚଇତ୍ରରେ ଗମ୍ଭାରଫଳ, ଗୁଡ଼ ଦେବ; ବାକି ମାସମାନଙ୍କରେ ତାଙ୍କର ମାମୁଲ ଗରମମସଲା ଦେବ ।

## ଅକ୍ଷଣ୍ଡିତ ରୋଗ ।

ଘୋଡ଼ା ଉପରେ ସବାର ହୋଇ ଉତୁରଲେ ଘୋଡ଼ାଙ୍କୁ ଦେଣି ଧଇ ଫୁଟଇ, ପାଣି ପିଅଇ ନାହିଁ ଅଥବା ପିଇବ, ହେଲେ ଗୃନ୍ଦଙ୍କୁ ହର ଅଳପ ପିଇବ । ଏପ୍ରକାର ହେଲେ ଉପରୋକ୍ତ ରୋଗ ବୋଲି ଜାଣିବ । ତହିଁର ଔଷଧ—ଯଷ୍ଟିମଧୁ, ଚରାଇତା, ସୈନ୍ଧବ ଲବଣ, ଜଲାସ କଦଳ ସମଭାଗରେ ବାଟି ଗୁଳା କର ଗଜରାଜ ମରଚ, ଶୁଣ୍ଠି, ଖୁଆଇବ । ଏପ୍ରକାର କଲେ ସାତ ଦିନରେ ରୋଗ ଭଲ ହୁଅଇ ।

## କମର ରୋଗ ।

ଘୋଡ଼ା କମର ହେଲେ କରରେ ଛିଦ୍ର ଥିବ, ଗୃଲଲେ ଅଡ଼ି ହେଉଥିବ, ପ୍ରାୟ ହେଁଉଥିବ । ତହିଁକି ଔଷଧ—କୁକୁଡ଼ା ଡିମ୍ବ, ମରଚ, ଜିରା ସବୁ ସିଝାଇବ, ପରେ କୁକୁଡ଼ା ଡିମ୍ବ ଖୋଳପା କାଢି ଚାର ରସ, ମରଚ, ବଚ ଏକାଠି ଚକଣ କର ବାଟିବ, ପାଣିଆ ଘିଅ ଗୋଳାଇ ପିଅଇବ, ନ ହେଲେ ଗୁଳା କର ଖୁଆଇବ । ଏପର କଲେ କମର ରୋଗ ଭଲ ହୁଏ ।

## ଘୋଡ଼ା ଅରୋଗ୍ୟ ଥିବା ପାଇଁ ମସଲା ।

ଶତମୂଲ ପାଚନ କରବ, ଘୋଡ଼ାମାନଙ୍କୁ ମାର୍ଗଶିରଠାରୁ ଚୈତ୍ର ପର୍ଯ୍ୟନ୍ତ ଏ ପାଞ୍ଚ ମାସ ହପାଜଭରେ ରଖିବ । ଶ୍ରାବଣ ମାସଠାରୁ

ମାର୍ଗଶିର ପର୍ଯ୍ୟନ୍ତ ମୁଗ ସିଝାଇ ଦାନା ଦେବ । ଶୁଣ୍ଠି, ପିପଳି, ମୁଥା, ଯୁଆଣି ସମଭାଗରେ ଚୂର୍ଣ୍ଣ ମସଲା କରି ଖୁଆଇବ । ପାଣି ତତାଇ ପିଇବାକୁ ଦେବ, ଶୁଖିଲା ଯାଗାରେ ବାନ୍ଧିବ । ଏ ପ୍ରକାରେ ମଧ୍ୟ ରୋଗୀ ହୋଇ ରହିଥାନ୍ତି । ଏହି ପାଞ୍ଚ ମାସରେ ଘୋଡ଼ାମାନଙ୍କ ପ୍ରତି ବିଶେଷ ଧ୍ୟାନ ଦେବା ବିଧି ।

## ଶତମୂଳ ।

ମହାସୁଗନ୍ଧମୂଳ, ଭଗ୍ରଠମୂଳ, ଅଶ୍ୱଗନ୍ଧମୂଳ, ମଲ୍ଲୀମୂଳ, ଜାଇଡ଼ାମୂଳ, ସିଙ୍ଗଡ଼ା, ସିଙ୍ଗଡ଼ା ଡ଼ାଳ ମୂଳ, ପଦ୍ମମୂଳ, କୁମ୍ଭୀଟୁଆମୂଳ, ସାଲୁଙ୍କମୂଳ, କେଉଣ୍ଟିମୂଳ, କାଙ୍କଡ଼ାମୂଳ, ଜାଷ୍ଠିମଧୁମୂଳ, ପାତାଳକଦଳୀମୂଳ, ପାରିଜାତମୂଳ, କର୍ଣ୍ଣିକପାଳୀମୂଳ, ବଣଓଲୁଅମୂଳ, କଣ୍ଟାଇକୋଳିମୂଳ, ଧଳାଅଙ୍କୁଲମୂଳ, ଅଷାଢୁଆମୂଳ, ଭୂଇଁକୁରୁଅଁମୂଳ, କୁଡେଇମୂଳ, ଗମ୍ଭାରି ଡ଼ାଳମୂଳ, ବଡ଼କୁରୁଅଁମୂଳ, ବଜ୍ରମୂଳ, ମହାରୁଣ୍ଡିମୂଳ, 'ହାଉମରଗ୍ରଗଛମୂଳ, ସାଜମାଠ ଗଛ ମୂଳ, କଣ୍ଟାପିଢ଼ାମୂଳ, ବଣମଲ୍ଲୀମୂଳ, ବାଉଗଛମୂଳ, କାରବରଢ଼ିମୂଳ, ଗ୍ରୂଅଲଧୂଅମୂଳ, ଘୋଡ଼ାବକୁଆଡ଼ମୂଳ, ବାସଙ୍ଗପତ୍ର, ବଡ଼ଗିଲମୂଳ, ସାନଗିଲମୂଳ, ବେତମୂଳ, ବଣକଦଳୀମୂଳ, ପିଅଶାଳିମୂଳ, ଜଗୁର୍ଣ୍ଡ୍ରମୂଳ; ବାସଙ୍ଗମୂଳ, ପାଠଳିମୂଳ, ମଧୁକାକୁଡ଼ିମୂଳ, ଅଙ୍କରାନ୍ତ୍ରମୂଳ, ନିମ୍ବମୂଳ, ଲୀଉମୂଳ, ବୃଦ୍ଧତାରକାମୂଳ, ସୁନାମାଖି, ବଣଖଜୁରିମୂଳ, ଚନ୍ଦ୍ରକାନ୍ତ, ଗନ୍ଧପୁରା, ବେଣ୍ଟି, ଷେକ; ଶୋଣଧକ; କୋଟଗାଣ୍ଠି; ମଇରଗିତାଅ; ଛଠାଧର; ନଳୋପଲ; ଇନ୍ଦ୍ରଜବ; ସରଳକାଠ; ଦେବଦାରୁ; ଦାରୁହଳଦ; ଭାଇଁସାଳ; ଗୋଧହୁଲା; କାଳକର୍ଣ୍ଣି; ଗୁଡ଼ୁଚି; କକଡ଼ାଶୃଙ୍ଗୀ; ରେଣୁକା; ମୁଥା; ଚଡାଉକାଠ; ଚଗରଡା; 'ଧାରୁଗ; ସୈନ୍ଧବ; କୋଚନ୍ନ; ବଚ; ଅଗୁରୁ; ବାଇବିଡ଼ଙ୍ଗ; ଗୁଗୁଳ; ଧନିଆଁ; କଳାଜିରା; ବଡ଼ଜିରା; ମେଥି; ହିଙ୍ଗୁ; ଶୁଣ୍ଠି; ପିପଳି; ମରିଚ;

ହରତାଳ; ମଣଶିଳ; ଗନ୍ଧକ; ଯୁଆଣି; ବାହାଡ଼ା, ଅଯୁଁଳା; ଗମ୍ଭାରିଫଳ; ଚନ୍ଦନ; କାଇଁଚଫଳ; ରକ୍ତଚନ୍ଦନ; ଗୁଳଶପତ୍ର; ଶତପତ୍ର; ତେଜପତ୍ର; ଯାଇଫଳ; ଲବଙ୍ଗ; ଜଟାମସୀ; ଅଳାଇଚ; କାକୋଲା; ଇନ୍ଦ୍ରଜ; ବେଲମଞ୍ଜି; ଦାରୁମୁସି, ସିନ୍ଦୂର; ବଡ଼ରେଣୁକ; କଟଫଳ; ଜମ୍ବୁବୀଜ; ଖାରଲୁଣ; ଚମ୍ପାକଢ଼ି; ବଉଳବୀଜ; ବାଦାମ; ବାଲୁଚବୀଜ; ମହା-ସୁଗନ୍ଧ; ବେଲଙ୍ଗ, ଅତୁସୀ; ପାପଡ଼ା; ବୋଲ, ମହୁ, ଦାରୁଷ; ପେଣ୍ଡିଖଜୁର; ଭୂଇଁକଖାରୁ; ପୁଷ୍କର; ପ୍ରିଅଙ୍ଗୁ; ଧୂପଗ୍ରରକ୍ତ; ଅଶ୍ୱଗନ୍ଧପିସାଙ୍ଗ; ମଧୁକ-କଡ଼ୀ, ଉଦୁମ୍ବର ମୂଳର ପାଣି; ପାପଡ଼ା; ନବଦଲଖଲଥ; ଗୁଳଲ; ମହାନିମ୍ବଫଳ; କନକଚମ୍ପା ମୂଳ, ତାଳଗୋଖରୁ; ଛେଳିଦୁଧ; ନାଗେଶ୍ୱର ମୁଚକୁନ୍ଦ; କୋଇଲେଖାମଞ୍ଜି; କଷ୍ଟଣ; କୃଷ୍ଣପର୍ଣ୍ଣି ଓ ସାଳପର୍ଣ୍ଣି ଏତେ ପଦାର୍ଥ ଏକତ୍ରରେ କୁଟିବ; ସବୁ ୬୧ ଭାଗ କରିବ; ନିତ୍ୟ ୧ ଭାଗ ଗୁଣ୍ଡ ୫୦ ଅଡ଼ା ପାଣିରେ ନୂଆହାଣ୍ଡି ଗୋଟିକରେ ସିଝାଇବ; ଏକ ଅଡ଼ା ପାଣି ଥିବ ଉତାରିବ; ଅଉ ଶୀତଳ କରି ଘୋଡ଼ାକୁ ପିଆଇବ । ଏହାକୁ ଶତମୂଳୀପାଚନ ବୋଲି କହାଯାଏ ।

## ଗୋଡ଼ଫୁଲା ।

ଗୋଡ଼ ଗଣ୍ଠି ଫୁଲାକୁ ଉଇବଲାର ମାଟି ଅଣିବ । ଘୋଡ଼ାଲୁଣ ପକାଇ ବାଟିବ, ଖପରା ଗୋଟିକରେ ଉଷୁମ କରି ସେ ବେଦନା ଉପରେ ଦେବ । ଦିନକୁ ଚାରି ଥର ଏହି ହିସାବରେ ଦେଉଥିବ । ହରିଡ଼ା, ବାହାଡ଼ା, ଯୁଆଣି, ଲୁଣ, ରସୁଣ, ବଚ, ହଳଦି ଏକାଠି କୁଟିବ; ଦୁଇ ଓଳି ସାତ ଦିନ ଖୁଆଇଲେ ଏ ରୋଗ ଭଲ ହୁଏ ।

## ବଜରି ରୋଗ ।

ଘୋଡ଼ା ବଜରି କୁଟି ଜ କଲେ ତାହାର ଔଷଧ—ରସୁଣ, ହିଙ୍ଗୁ, ହରଡ଼ା, କଣ୍ଟକା, ପିପ୍ପଳି, ଗଜପିପ୍ପଳି, ସୈନ୍ଧବ ଲବଣ ସମଭାଗରେ

ଲୁଣ ଖୁଆଇଲେ ବଳକର କରଇ, ନ କର ପାରିଲେ ବଳକର କଣାରେ କଳା ମରିଚ, କର୍ପୂର ଗୁଣ୍ଡ କରି ବଳଡା କରିବ, ଆଉ ଗଳାଇଦେବ, ଅଦାରସ ନାକରେ ଚପି ଫୁଙ୍କିବ । ଏପରି କଲେ ରୋଗ ଭଲ ହୁଅଇ ।

## ଗୋଡ଼ଫୁଲା ।

ଅନ୍ୟ ପ୍ରକାର ଉପାୟ—ମୂଳଙ୍ଗାରେଚର, ନ୍ୟକଡା ପାରୁ ଏକତ୍ରରେ ବାଟି ଫୁଲିବା ଯାଗାରେ ମର୍ଦ୍ଦନ କରିବ । ପେଟକୁ ଔଷଧ—ଗନ୍ଧଦ୍ରବ୍ୟ, ରସୁଣ, ମରିଚ, କଟୁକୀ, ବଚ, ହଳଦୀ ସମଭାଗରେ କୁଟିବ, ଘୋଡ଼ାକୁ ଖୁଆଇବ । ଏପରି କଲେ ସାତ ଦିନରେ ରୋଗ ଭଲ ହୁଅଇ ।

## ମାଳ ରୋଗ ।

ଘୋଡ଼ାକୁ ମାଳ ରୋଗ ହେଲେ ଦାନା ପାଣି ଛୁଇଁବ ନାହିଁ. ସବୁବେଳେ ଆଖି ବୁଜି ଥିବ, ଏପରି ହେଲେ ଉପରୋକ୍ତ ରୋଗ ବୋଲି ଜାଣିବ । ତାହାର ଔଷଧ—ମହାକାଳଫଳ ରସ, ଉସିର. ଚଡାପାରୁ, ଭୃଙ୍ଗରାଜମୂଳ ରସ, ଥୋଡ଼ପତ୍ର ସମଭାଗରେ ବାଟି ଘିଅ ତେଲରେ ଭାଜି ପକାଇବ, ଠେକରେ ପୂରାଇ ରଖିବ, ଘୋଡ଼ା ଦେହରେ ମର୍ଦ୍ଦନ କଲେ ରୋଗ ଭଲ ହୁଏ ।

## ଶ୍ରାବଣ ମାସରେ ପୀଡ଼ା ।

ଶ୍ରାବଣ ମାସରେ ଘୋଡ଼ାକୁ ପୀଡ଼ା ହେଲେ ଏ ମସଲା ଦେଇ ପୀଡ଼ା ନାଶ କରିବ । ମରିଚ, ପିପଳି, ଶୁଣ୍ଠି, ଲୋଧପତ୍ର, କକଡ଼ାଶୃଙ୍ଗି, ଯାଇଫଳ, ଅଳାଇଚ, ଚୋବଚିନି, ଗୋହପିତ୍ତ, ଇନ୍ଦ୍ରଯବ, ସଚ୍ଚଳ ଝୁଡୁଙ୍ଗ ରସ ୧ ସେର, ଗଧ୍ୟଳ ପିତ୍ତ, ଗଣ୍ଠିଅଳା, ଗଜପିପଳି, ବାସଙ୍ଗ, ଘୋଡ଼ାଲୁଣ, ହଳଦି, ଗୁଡ, ଏ ସବୁ ବାଟି କରି ବେଲ ପ୍ରମାଣେ ଗୁଳା କରିବ ସକାଳୁ ଦେବ, ପରେ ଖାଇବା ଦେବ, ସେ

ଉପ୍ତିରୁ ଘାସ ଦେବ । ଏରୂପ କଲେ ଦଶ ଦିନରେ ରୋଗ ଭଲ ହୁଏ ।

କଣ୍ଠଫୁଲା ।

ଘୋଡ଼ାର କଣ୍ଠ ଫୁଲିଲେ ତହିଁର ଉପାୟ—ଜୋରଥୋଞ୍ଚି ପତ୍ର ଅଣି ବାଟିବ, ପରେ ଖପରରେ ଗୁଣି ତେଲ ସଙ୍ଗେ ଘାଣ୍ଟିବ, ପରେ କନା ପୁଟୁଳିରେ ପୂରାଇ ଫୁଲା ଉପରେ ସେକ ଦେବ । ସେଠାକୁ ଔଷଧ—ଗୃନ୍ଧସୁଣ୍ଠି, ମରିଚ, ରସୁଣ, କଟୁକୀ, ଘୋଡ଼ାବଚ, ଘୋମଚାଳ; ହଳଦ ସମଭାଗରେ କୁଟି ଘୋଡ଼ାକୁ ମସଲା ଦେବ । ଏରୂପ ସାତ ଦିନ କମ୍ବା ନ ଦିନ କଲେ ରୋଗ ଭଲ ହୁଏ ।

ତେଜ କରିବାର ।

ଘୋଡ଼ାକୁ ତେଜ କରିବାକୁ ହେଲେ ତହିଁର ପ୍ରତି ଉପାୟ—କଣ୍ଠାଇକୋଳି ଚେର, ମଧୁ, ଗଡ଼ୁଖଣ୍ଡ ସମଭାଗରେ କୁଟି ଖୁଆଇଲେ ପାଞ୍ଚ ଦିନରେ ରୋଗ ଭଲ ହୁଏ ।

ବୈଶାଖ ଓ ଜ୍ୟେଷ୍ଠର ମସଲା ।

ଗମ୍ଭାରି ଫଳ, ଯୁଆଣି, ମଧୁ କାକୁଡ଼ି, ଖଣ୍ଡ ସବୁ ଏକତ୍ରରେ କୁଟି ମସଲା ଦେବ, ସାଙ୍ଗର ପାଣି ପିଇବାକୁ ଦେବ । ଏପ କରିଲେ ଘୋଡ଼ା ଦେହ ଆରୋଗ୍ୟ ହୋଇଥାଏ ।

ଆଷାଢ଼ ଓ ଶ୍ରାବଣର ମସଲା ।

ବାସଙ୍ଗପତ୍ର ମତ୍ରରେ ବାଟି ତେଲ ପ୍ରମାଣେ ଦେଲେ ଘୋଡ଼ାର ଦେହ ହୃଷ୍ଟ ପୁଷ୍ଟ ଓ ନୀରୋଗ୍ୟ ହୋଇଥାଏ ।

## ଭାଦ୍ର ଓ ଆଶ୍ୱିନ ମାସର ମସଲା ।

ଜମ୍ବୁପତ୍ର, ଘୋଡ଼ାଲୁଣ ବାଟି ବେଲ ପ୍ରମାଣେ ଭାଦ୍ରବରେ ଦେବ ଓ ଅଶ୍ୱିନ କାର୍ତ୍ତିକରେ ତାଳମୂଳ ଅଣି ଖଣ୍ଡ ମିଶାଇ ଲୁଠି କର ଦେବ । ଏରୂପ କଲେ ଘୋଡ଼ା ସଦାବେଳେ ଜୀବଲପି ଓ ନୀରୋଗୀ ହୋଇଥାନ୍ତି ।

## ଝୋଙ୍ଗଣା ରୋଗ ।

ଘୋଡ଼ା ଦେହରେ ଚକଡ଼ା ଚକଡ଼ା ବହୁତ ଘା ହେଲେ ତାହାକୁ ଉପରୋକ୍ତ ରୋଗ ବୋଲି ଜାଣିବ । ଏହାର ଔଷଧ—ଭଙ୍ଗଦାରୁ-ମୁସ୍ତି, ହଳ୍ଦୁଲି, ଖଇର, ଝୋଙ୍ଗଣା, ମଇରଗିରଅ, ଏ ଦ୍ରବ୍ୟମାନ ୪ ତୋଳା ଲେଖାଏଁ ଏକତ୍ରରେ କୁଟିବ ଓ ଅଦା ରସରେ ବାଟିବ । ଏହା ଯେ ଘାରେ ୪୦ ଦିନ ପର୍ଯ୍ୟନ୍ତ ଲେପ ଦେବ, ଉଷ୍ଣ ପାଣିରେ ପ୍ରତିଦିନ ଘାମାନଙ୍କୁ ଧୋଇ ଲେପ ଦେଉଥିବ, ଉଷ୍ଣ ପାଣି ପିଆଉଥିବ, ଗରମମସଲା ଦେଉଥିବ । ଏପରି କଲେ ରୋଗ ଆରୋଗ୍ୟ ହୋଇଯାଏ ।

## ଜହର ବାତ ।

ଗ୍ଲଭରେ, ପେଟରେ, ଜଙ୍ଘରେ, ଗୋଡ଼ରେ ରକ୍ତ ଗୁଳାମାନ ପଡ଼ଇ ଏବଂ ଘୋଡ଼ାର ପିଠି ବଡ଼ ବ୍ୟଥା କରିବାରୁ ଜଲବଲ ହେଉଥାଇ । ଏପରି ହେଲେ ଜହର ବାତ ବୋଲି ଜାଣିବ । ତାହାର ଉପାୟ—ବଡ଼ାଙ୍ଗ, ସହରାଜମଞ୍ଜି, ହଳଦୀଗୁଣ୍ଡା, ଶୁଣ୍ଠି, ଚିତ, ପିପଳିମୂଳ, ଗନ୍ଧସ୍ୱରା, ଚରାଇତା, ହାତିଅଜାକ୍କଡ଼ମଞ୍ଜି, କାଫଡ଼, ରସୁଣ, ଗଙ୍ଗଦହଣା ମୂଳ, ଭେରୁ ଟେଲ, ଅରଖମୂଳ ଓ ଛେଲି, ଏ ସବୁ ଗୁଡ଼ ତୋଳା ଲେଖାଏଁ ଅଣି ଗୁଣ୍ଡ କରିବ, ସୋରିଷ ତେଲରେ ଗୁଳା କରି ପନ୍ଦର ଦିନ ଖୁଆଇବ, କାଇଞ୍ଜା ଦେବ, ପରେ ଘାସ ପାଣି ଦେବ

ରକ୍ତ ପଡିବା ବେଦନା ଉପରେ ଜୋକ ବସାଇବ, ଦୁର ଯାଦ, ବେଦନା ହୋଇଥିଲେ ସୋମରାଜ ମଞ୍ଜି, ଶୁଣ୍ଠି ଏ ଦୁହିଙ୍କି ଚକଣ କରି ତାହି ବେଦନା ଉପରେ ଲେପ ଦେବ । ଏପରି କଲେ ରୋଗ ଭଲ ହୋଇଯାଏ ।

## ଅଗ୍ନିବଦ୍ଧ ରୋଗ ।

ଦାରୁହଳଦ, କରଞ୍ଜାତେଲ, ସୋମରାଜମଞ୍ଜି, ବାଇବଡ଼ଙ୍ଗ, ଯୁଆଣି, ଗନ୍ଧତ୍ରୀମଞ୍ଜି, କଟୁକୀ, ବଚ, ନିମ୍ବତେଲ, ଘିଅକୁଆଁରି, ହଳଦ, ଏ ଦ୍ରବ୍ୟମାନ ସମାନ କରି ଗାଈ ଦହିରେ ସବୁ ବାଟିବ । ସକାଳୁ ଗନ୍ଧଲ- ଧୁଆ ପାଣିରେ ଗାଧୋଇବ, ଏ ଔଷଧ ଲେପ ଦେଉଥିବ, ଏପରି କଲେ ରୋଗ ଭଲ ହୁଏ । ପେଟକୁ ଉପାୟ—ସୋମରାଜମଞ୍ଜି, ହଳଦ, ଗୁଡ଼, ଲୁଣ ସମଭାଗ କରି ମର୍ଦ୍ଦନ ଦେବ । ଏପ୍ରକାର କଲେ ରୋଗ ଭଲ ହୁଏ । ଅନ୍ୟ ପ୍ରକାର—ସାଳଗରମଞ୍ଜି ଅଣି ଖପରା ଗୋଟିକରେ ଭାଜିବ, ହାଣ୍ଡିରୁ କାଢି ଘୋଡ଼ାଇ ରଖିବ, ଗାଈ ଦହିରେ ବାଟିବ, ଯାକୁ ବେଢ଼ ପାଣିରେ ଧୋଉଥିବ । ଏପ୍ରକାର କଲେ ପାଞ୍ଚ ଦିନରେ ରୋଗ ଭଲ ହୋଇ- ଯାଏ । ଘୋଡ଼ା ଦେହରୁ ଲୁମ ଉପୁଡ଼ୁ ଥିଲେ ଗନ୍ଧସାରକୁ ଯାରୁଳ ପାଣିରେ ଚକଣ କରି ବାଟିବ, ସେ ଉପୁଡ଼ିବା ସ୍ଥାନରେ ଘଷିଲେ ୧୫ ଦିନରେ ଲୁମ ଅଙ୍କୁରଇ ଓ ଘୋଡ଼ା ପେଟ ମାଡ଼ି ଶୋଇ ପଡ଼ଇ, ବଡ଼ ଛଲବଲ ହୁଅଇ । ଏପରି ହେଲେ ବାୟବ୍ୟ ରୋଗ ବୋଲି ଜାଣିବ । ତହିଁର ଉପାୟ—ନିମ୍ବଫଳ ରସ, ସୈନ୍ଧବ ଓ ଘୋଡ଼ା ଲବଣ, ହଳଦ ଗୁଣ୍ଡ, ଏତେକ ଦ୍ରବ୍ୟ ପାଣି ପକାଇ ଚକଟି ଗୁଳା କରିଖୁଆଇବ । ଏପରି ସାତ ଦିନ କଲେ ବାୟବ୍ୟ ରୋଗ ଭଲ ହୁଅଇ ।

## ପଦ୍ମଶୂଳ ରୋଗ ।

ଘୋଡ଼ା ଦାନା ଅଳ୍ପ ଖାଉଥାଇ, ଟାପୁରେ ଭୂଇଁ ଖୋଳୁଥାଇ, ଦନ୍ତେ

ରହୁ ପୁଣି ପଡ଼ୁଥାଇ, କେତେବେଳେ ମଥା ଟେକୁଥାଇ ଓ କେତେ-ବେଳେ ଘୋରୁଥାଇ । ଏପରି ହେଲେ ପଦ୍ମଶୂଳ ବୋଲି ଜାଣିବ । ତାହାଙ୍କ ଉପାୟ— ଯୁଆଣି ୨ ଭାଗ, ଘୋଡ଼ାଲୁଣ ୧ ଭାଗ, ମୁଥା ୧ ଭାଗ, ହଳଦୀ ୨ ଭାଗ, ଗୁଗୁଳ ୧ ଭାଗ; ସବୁ ଗୁଣ୍ଡ କରି ତତଲା ପାଣିରେ ଖୁଆଇବ ।

## ଡାରୁଖାଉର ସିତ କୁପିତ ରୋଗ ।

ବଚ, ସୋମରାଜମଞ୍ଜି, ଶୁଣ୍ଠି, ମରିଚ, ଯବକ୍ଷାର, କଟୁକି, ଏ ଛ ଦ୍ରବ୍ୟ ପ୍ରତ୍ୟେକ ଏକ ତୋଲା ଲେଖାଏଁ ଆଣିବ, ସବୁ ଛେଚି କନାରେ ପୁଡ଼ା ବାନ୍ଧିବ, ଚାଉଳଧୁଆ ପାଣି ହାଣ୍ଡିରେ ପୂରାଇ ରଖିବ, ସେ ପାଣି ସ୍ଥିର ହେଲେ ଉପରୁ ନିଗାଡ଼ି ଦେବ, ସେ ମଣ୍ଡପାଣିରେ ମସଲା ପୁଡ଼ାକୁ ପକାଇ ଥିବ, ହାଣ୍ଡି ଉପରେ ଗୋଟିଏ ଘୋଡ଼ାଇ ସ୍ଥଳରେ ରଖିବ, ପରେ ସେ କନାପୁଟୁଳି କାଢ଼ି ସେ ମଣ୍ଡ ଦେହଯାକରେ ଘଷିବ । ପେଟକୁ ଔଷଧ—ସୋମରାଜମଞ୍ଜି, ହଳଦୀ ଏକତ୍ରରେ କୁଟିବ, ଗୁଡ଼ରେ ମିଶାଇ ପ୍ରତିଦିନ ବଡ଼ିସକାଳୁ ଦେଉଥିବ । ଏପ୍ରକାର କଲେ ପନ୍ଦର ଦିନରେ ରୋଗ ଭଲ ହୁଏ ।

## ମୂତୁରା ରୋଗ ।

ଘୋଡ଼ାର ଲିଙ୍ଗ ଗଣ୍ଠି ଉପରକୁ ଫୁଲି କରି ରହିଲେ ମୂତୁରା ରୋଗ ବୋଲି ଜାଣିବ । ତହିଁ ପ୍ରତି ଉପାୟ—ବାଦର ଦାନ୍ତ, ମଲ୍ଲଗିରି, ମୁସମ୍ବର, ମରିଚ ମାତ୍ରେ ଲେଖାଏଁ ଆଣିବ, ଲେମ୍ବୁ ରସରେ ବାଟିବ, ସବୁ ସଜାଇରେ ପୂରାଇ ଗୋଟିଏ ଘୋଡ଼ାଇ ରଖିଥିବ, ସେ ବେଦନା ଉପରେ ଲେପ ଦେବ, ଶୁଖିଥିଲେ ଦେଉଥିବ । ଏପରି ଚାରି ଦିନ ହେଲେ ସେ ରୋଗ ଭଲ ହୋଇଯିବ ।

## ବାମୂଣିଆ ରୋଗ ।

ଘୋଡ଼ାର ଲାଞ୍ଜ ମୂଳରୁ ଅଗ ପର୍ଯ୍ୟନ୍ତ ଭିତରପଟରେ ଗୋଟା ଗୋଟା ହୋଇ ଘା ହୋଇଯାଏ, ଲାଞ୍ଜ ବନ୍ଧି ନ ପାରଇ, ଲାଙ୍ଗୁଡ଼ରୁ ଲୁମ ଉପୁଡ଼ି ଯାଉଥାଇ, ତାହା ବାଳରେ ମଧ୍ୟ ଏରୂପ ହୁଅଇ, ତାକୁ ବାମୂଣିଆ ରୋଗ ବୋଲି ଜାଣିବ । ତହିଁର ଉପାୟ—ସେ ସ୍ଥାନରୁ ବାଳ କଟୁରାଇ ଦେବ, ଆଉ ରସୁଣ ବାଟିକରି ସେ ଗୋଟା ଉପରେ ଦେବ, ନ ହେଲେ ବାଳିଆ ପୋଡ଼ି କରି ସିଅଚୂନ ମିଶାଇ ସେ ଘା ଉପରେ ଦେବ । ଏପରି କଲେ ୭।୮ ଦିନରେ ସେ ରୋଗ ଭଲ ହୁଏ । ଅନ୍ୟପ୍ରକାର—ଉପରୋକ୍ତ ଔଷଧରେ ରୋଗ ଭଲ ନ ହେଲେ ମଇରଗିରଅଳୁ କଣ୍ଟା ଚୂରିବ, ଅପାମାରଙ୍ଗ ପୋଡ଼ି ତାର ଖାର ମିଶାଇ ଅରଖ କ୍ଷୀରରେ ବାଟିବ, ସେ ଘା ଉପରେ ଲେପ ଦେବ, ଯେବେ ସେ ଘା ବଡ଼ ହୋଇ ଯାଇଥିବ ତେବେ ସେ ଘାକୁ କଷା ପାଣିରେ ଧୋଇ ପାଚଲ କନାରେ ସେ ଔଷଧକୁ ଘଷି ଘା ଉପରେ ପଟି ଦେବ । ଏପ୍ରକାର କଲେ ସେ ରୋଗ ଭଲ ହୁଏ ।

## ଆଖିଫୁଲ୍ଲ ରୋଗ ।

ଘୋଡାର ଆଖିରେ ଫୁଲ୍ଲ ପଡ଼ିଲେ ପିଲ୍ଲ ମୃଗର ଶିଙ୍ଗ ଆଣି ଚନ୍ଦନ କରି ଘୋଡ଼ର ପାଲୁଅପକ୍ଷିରେ ଲଗାଇ ଦେବ, ଡୋଳା ଭିତରେ ନ ହେଲେ କଳା ଚୁଡ଼ି ଚନ୍ଦନ କରି ଚୁରିବ, ବାଉଁଶ ନଳ ଗୋଟାକରେ ଡ଼ୋଳା ଭିତରେ ଦେଇ ତହିଁରେ ଛାଚ ଗୁଣ୍ଡ ଟିକଏ ଲେଖାଏଁ ଫୁଙ୍କି ଦେଲେ ସେ ଫୁଲ୍ଲ ଭଙ୍ଗା ହୁଅଇ । ନ ହେଲେ ଉତୁରୁଳ କ୍ଷୀର, ଛଉଲୁଣ ଛେଳି କନାପୁଡ଼ା କରି ଫୁଲ୍ଲ ଉପରେ ଚଘୁଡ଼ିଲେ ଭଙ୍ଗା ହୋଇବ । ଦିନକୁ ଚାରି ପାଞ୍ଚ ଥର ଏପରି କରିବ ।

## କୁରୁକୁର ରୋଗ ।

ଘୋଡ଼ାର ଜିହ୍ୱା ଶୁଖି ଯାଏ, ଘୋଡ଼ା ଯଦ୍ୟପି ଲାଞ୍ଜ ମୋଡ଼ି ହୋଇ ଖାଲରେ ପଡ଼ଇ, ତୁଣ୍ଡ ପାଟ ପଡ଼ିଯାଏ ଓ ପଡ଼ଇ ଉଠଇ । ତେବେ ତାହାକୁ କୁରୁକୁର ରୋଗ ବୋଲି ଜାଣିବ । ତହିଁର ଔଷଧ—ଘୋଡ଼ାବଚ, ମରିଚ, ପାନବଉଳ, ଶୁଣ୍ଠି, ପିପଳି, ପିପଳାମୂଳ, ଯୁଆଣି, ସୋମରାଜମଞ୍ଜି, ହିଙ୍ଗୁ, କଟୁକି, ଚଇମୂଳ, ଟାଙ୍ଗଣା, ରାଇ, ଘୋଡ଼ାଲୁଣ, ଧୂଆଁପତ୍ର, ଅଲକ୍ତ, ମହାକାଳମୂଳ ସମଭାଗରେ କୁଟି ସୋରିଷ ତେଲରେ ଚଟଣ କରି ବାଟିବ । ଅଉ ଛିନ୍ନ ମେଣ୍ଢା କରି ରଖିଥିବ । ଏହା ଦିନକରେ ତିନି ଥର କରି ଖୁଆଇ ଦେବ । ରୋଗ ଭଲ ହୁଅଇ, ପେଟ ବ୍ୟଥା କରି ଶୂଳ ମାରୁଥିଲେ ଏହି ମସଲାରେ ମଦ୍ୟ ମିଶାଇ ପିଆଇଲେ ଭଲ ହୁଅଇ ।

## ଘୋଡ଼ା ମଳ କରି ପାରୁ ନ ଥିଲେ ।

ଇନ୍ଦ୍ରମାଦଳପତ୍ର, ଘୋଡ଼ାଲୁଣ, ମରିଚ, କର୍ପୂର ଏ ସବୁ ଦ୍ରବ୍ୟ ଚୂର୍ଣ୍ଣ କରି ମଳଦ୍ୱାର ଭିତରକୁ ହାତରେ ପୂରାଇ ଦେବ ଓ କର୍ପୂର ଚୂନ ବଳିତା କରି ଲିଙ୍ଗଦ୍ୱାରରେ ପୂରାଇ ଦେବ । ଏରୂପ କଲେ ମଳ ଉତ୍ସର୍ଗ କରଇ । ଅନ୍ୟ ପ୍ରକାର—ହଳଦିଗୁଣ୍ଡ, ଟାଙ୍ଗଣା କାଥରେ ଉଲୁପାଇବ ଓ ବହୁତ ବର୍ଷର ତେନ୍ତୁଳି ରସରେ ଗୋଳାଇ ପିଆଇବ, ମଳ କରିବ । ପେଟ ଫୁଲିଥିଲେ ବାନ୍ତି ମଧ୍ୟ କରିବ, ନ ହେଲେ ପୋକ-ଶୁଙ୍ଗାପତ୍ର ଗୁଡ଼ରେ ମିଶାଇ ଖୁଆଇଲେ ମଳ ଉତ୍ସର୍ଗ କରିବ ଓ ବାନ୍ତି ମଧ୍ୟ କରିବ, ନଚେତ୍ ଲଙ୍କାମରିଚ ବାଟିକରି ଖଣ୍ଡ ସଙ୍ଗରେ ପଣା କରି ପିଆଇବ । ଏପରି କଲେ ଭଲ ହୁଅନ୍ତି ।

## ଘୋଡ଼ା କମ ଖୋରାକ ଖାଉଥିଲେ ।

ମରିଚ, ଶୁଣ୍ଠି, ବଚ, ରାଇ, ହିଙ୍ଗୁ ସମଭାଗରେ ଏକତ୍ରରେ

ଚୂରବ, ଷୋଳଚଣା ଗୁଣ୍ଡ କର ରଖିଥିବ, ଏ ପାଞ୍ଚ ଦ୍ରବ୍ୟରୁ ଏକ ମୁଠା ହେଲେ ଚଣାଗୁଣ୍ଡ ଢକ ସାଙ୍ଗ ମିଶାଇ ବଡ଼ସକାଳୁ ଖୁଆଇବ ଓ ପାହାନ୍ତିଅରୁ ଚହଲାଇବ । ଏପରି ୨୧ ଦିନ ଖୁଆଇଲେ ଘୋଡ଼ା ହୃଷ୍ଟପୁଷ୍ଟ ଓ ନୀରୋଗୀ ହୋଇଥାଏ ।

## କୁକମ୍ଭୋଗୀ ରୋଗ ।

ଘୋଡ଼ା ଦାନା ଖାଇଲେ ବୁକୁରେ ଲାଗଇ, ଖାଇ ପାରଇ ନାହିଁ ଓ ଗାଇ ଦିଅଇ ଏହାକୁ କୁକମ୍ଭୋଗୀ ରୋଗ ବୋଲି ଜାଣିବ । ତାହାର ଔଷଧ—ମଇରଗିରଥ ଏକ ତୋଳା ମୁଗ ଅଠାରେ ମିଶାଇ ଖୁଆଇବ । ସେ ଦିନ ଦାନାପାଣି ନ ଦେବ । ଘୋଡ଼ା ଚଦକ୍ତ ହୋଇ ଘାସ ପାଣି ମାଗିଲେ ଗଛରେ ଅଳପ ଘାସ ଦେବ । ଏପରି କଲେ ରୋଗ ଭଲ ହୁଏ ।

## ରକ୍ତବାନ୍ତି ।

ଘୋଡ଼ା ରକ୍ତ ବାନ୍ତି କରୁଥିଲେ ତହିଁର ଉପାୟ—ନୂଆ ଅଟ୍ଟା ଗୋଟିକରେ ଦୁଇ ଅଡ଼ା ପାଣି ଦେଇ ଧନିଆଁ ବୋଡ଼ାଏ ବତୁରାଇ ଦେଇଥିବ । ସକାଳୁ ଧନିଆକୁ ଚକଟି ପକାଇବ, ପରେ ବାଟିକରି ସେହି ପାଣିରେ ସେହି ପାଣି ବାଟିକରି ପିଆଇ ଦେବ । ଖଣ୍ଡ ପଥ୍ୟ ଦେଇଥିବ । ଏରୂପ କଲେ ରକ୍ତବାନ୍ତି ବନ୍ଦ ହୁଏ ।

## ବନ୍ଧମୂତ୍ର ରୋଗ ।

ଘୋଡ଼ା ବନ୍ଧପରିମାଣରେ ପ୍ରସ୍ରାବ କଲେ ଶକ୍ତୁଣ୍ଡାମଞ୍ଜି ଅଧ ସେର ଘିଅରେ ଖରଡ଼ିବ, ଯେମନ୍ତ କି ପୋଡ଼ି ନ ଯାଏ । ବଡ଼ସକାଳୁ ଦୁଇ ଥର ଖୁଆଇ ଦେବ । ଏପ୍ରକାର ଦୁଇ ତିନ ଦିନ କଲେ ବନ୍ଧମୂତ୍ର ରୋଗ ଅରୋଗ୍ୟ ହୁଏ ।

## ଘୋଡ଼ାର ଦେହବ୍ୟଥା ।

ଘୋଡ଼ା ପଡ଼ିବାର ଦେହ ବ୍ୟଥା ହେଲେ ତାହାର ଔଷଧ—ମରଚ ୧ ତୋଲା, ହଳଦଗୁଣ୍ଡ ୨ ତୋଲା, ରାସ୍ନା ୧ ତୋଲା, ଗୁଆଗିଅ ୧ ତୋଲା, ଗନ୍ଧସୁରା ୧ ତୋଲା; ଏ ସବୁ ମିଶାଇ ଘୋଡ଼ାକୁ ଖୁଆଇବ । ଏପ୍ରକାର କଲେ ୯ ଦିନରେ ରୋଗ ଭଲ ହେବ । ଏଥି ଭିତରେ ଘୋଡ଼ାକୁ ସବାର କରିବ ନାହିଁ ।

## ଛେରସ୍ ରୋଗ ।

ଘୋଡ଼ା ପାଣି ପରି ଛେରୁଥିଲେ, ନଚେତ୍ ତରଳ କରି ଲେଦ କରୁଥିଲେ ତାହାର ଔଷଧ—କଞ୍ଚାବାଉଁଶ ପତ୍ର ଦୁଇ ଟୋପୀ ଆଣିବ, ପାଣିରେ ଧୋଇ ଦେବ, ସେହି ଓଦାପତ୍ର ଦିନଯାକ ଘୋଡ଼ାକୁ ଖାଇବାକୁ ଦେଉଥିବ, ନ ଖାଇଲେ ହାତରେ ଧରି ଖୁଆଇବ । ସେ ଦିନ ଘାସ ପାଣି ଦେବ । ଏପ୍ରକାର ଦୁଇ ଦିନ କଲେ ରୋଗ ମୁକ୍ତ ହୁଅଇ ।

## ସରଦଗରମ ।

ଘୋଡ଼ାକୁ ସରଦଗରମ ହେଲେ ଦେହ ତାହାର ଝାଳ ବହୁଥିବ, ବହୁତ ସାହାସୁ ଥିବ । ଏପ୍ରକାର ହେଲେ ପବନ ବାଜିବା ଯାଗାରେ ବାନ୍ଧିବ ନାହିଁ । ଦେହଠାରୁ ଖୁରା ପର୍ଯ୍ୟନ୍ତ ଦୁଇ ଖଣ୍ଡ ବହଳ କପଡ଼ା ଘୋଡ଼ାଇ ଦେବ । ଦୁଇ ପାଖରେ ଅଗ୍ନିର କରିବ, ନିଆଁ ଜାଳିବ । ଶୁଣ୍ଠି, ପିପଳି, ଘୋଡ଼ାବଚ, ମରଚ, କଳାଜିରା, ଯୁଆଣି, ପିପଳାମୂଳ, ମଇଁଷିଅ, ମୂସମୂର, ଗୁଗୁଳ, ଡୁମ୍ବାରସ୍ଥି, ସୈନ୍ଧବଲବଣ, ମଞ୍ଜିଷ୍ଠା, ଭୁଇଁକାଫଳ, ବାଇବିଡଙ୍ଗ, ଜିରା, ପର୍ଣ୍ଣସମଞ୍ଜି, କଟୁକୀ, ରାସ୍ନା, ଗନ୍ଧସୁରା, ହରଡ଼ା, ଝାଙ୍ଗଣୀ, ସୋମରାଜ, ରସୁଣ, ଖଇର, ସୁନାମାଖି, ପାନଉଞ୍ଚ, ଜାଷ୍ଟିମଧୁ, ରକ୍ତଚନ୍ଦନ, ହରଡ଼ା, ମହଣାଫଳ; ଏ ସବୁ ଦ୍ରବ୍ୟରୁ ୪ ତୋଲା

ଲେଖାଏଁ ନେଇ ଖୁନ୍ଦିବ । ଏଥିରେ ଚଉଷଠୀ ତୋଳା ହଳଦଗୁଣ୍ଡା ମିଶାଇବ, ହାଣ୍ଡିରେ ରଖିବ, ଦୁଇଓଳ ଖୁଆଇବ । ବେଦନା ବଳବନ୍ତ ହେଲେ ଦନକୁ ତନ ଥର ଖଆଇବ । ସେହି ଦନ ପାଣି ଦେବ ନାହିଁ । ଅନ୍ୟ ଦନ ପାଣି ତତାଇକର ଦେବ । ଘାସ, ଦାନାରେ ତାହାର ଅହାରରୁ ଅଧେ ଦେବ । ଏପ୍ରକାର କଲେ ଏ ରୋଗ ଭଲ ହୁଏ ।

## ମିଞ୍ଜା ରୋଗ ।

ଘୋଡ଼ା ଆଖିରେ ଏକପ୍ରକାର କୀଟ ରହିକର ନେତ୍ରକୁ ଖଗ୍ରପ କରି ଦାଏ । ନେତ୍ର ମଳିନ ଦଶିବ, ଲୋତକ ବହୁଥିବ, ଗୃହ ଦନ ଗଲେ ଦଶିବ ନାହିଁ । ଏପ୍ରକାର ହେଲେ କୁକୁଡ଼ାଗୁହ ଗୃହ ପାଞ୍ଚ ଥର କ୍ଷତ୍ରରେ ଥାଇ ଲଗାଇ ଦେଉଥିଲେ ସେ କୀଟ ନାଶ ହୋଇଯାଏ । ନେତ୍ରକୁ ଭଲ ହୋଇ ଦଶେ । ଏପ୍ରକାର ସାତ ଦନ କରିବ ।

## ଆଖିରୁ ସବୁଦନରେ ପାଣି ଝରୁଥିଲେ ।

ଘୋଡ଼ା ନେତ୍ରରୁ ସବୁଦନରେ ପାଣି ବହୁଥିଲେ, ତହିଁ ପ୍ରତି ଔଷଧ—ଫିଟ୍‌କିରି ଗୁଣ୍ଡ କରି ଛାଣିବ, ଗୁଆଲହୁଣୀରେ ଫେଣ୍ଟି କରି ଗେଣ୍ଡାଶାମୁକାରେ ରଖିଥିବ, ହଳଦପାଣିରେ ଧୋଇ ଦନକୁ ତନ ଗୃହ ଥର ଲଗାଇଦେବ । ଗୃହ ପାଞ୍ଚ ଦନରେ ରୋଗ ଭଲ ହୁଅଇ ।

## ତଙ୍ଗ ଲାଗି ପେଟଭଳକୁ ଫୁଲିଲେ ।

ବେଙ୍ଗପାଣିରେ କନା ଭିଜାଇ ବାନ୍ଧିଦେବ । ଏ ପ୍ରକାର ତନି ଦନ କର ଦେଲେ ରୋଗ ଭୃଶ୍ୟା ପଡ଼ିବ ।

## ଚିଭିଘାଲୁ ।

ବାଖର ଲାଗି ଘୋଡ଼ା ପିଠିରେ ଘା ହେଲେ, ତହିଁର ଔଷଧ—କଳାମାଟି, ଘୋଡ଼ାଲୁଣ, ମଇଁଷିଗୋବର, କଳାଦୁଦୁରିପତ୍ରରେ ବାଟି

ଖର୍ପରରେ ଭସ୍ମ କରିବ, ସେ ଫୁଲବାଠାରେ ଲଗାଇବ । ଏପରି ଗୃହ ପାଞ୍ଚ ଦିନ କଲେ ରୋଗ ଭଲ ହୁଏ ।

## ଘୋଡ଼ା ଅଣ୍ଡକୋଷ ।

ଘୋଡ଼ାର କୋଷ ଫୁଲିଲେ ତହିଁ ପ୍ରତି ଔଷଧ—ସୋମରାଜମଞ୍ଜି, ଅଳକୁ, ରଗଥିବା ଧୂଆଁ ସାଲଗବ, ମହାକାଳମୂଳ ଓ ତେଲ, ଘୋଡ଼ାଲୁଣ, ଲଙ୍କାମରିଚ, ଗୃନ୍ଧସାର; ଏହି ସବୁ ଦ୍ରବ୍ୟକୁ ସୋରିଷ ତେଲରେ ବାଟିବ,ଗୁଳାକରି ଖୁଆଇବ । ଅଣ୍ଡକୋଷ ଗୁଳାକୁ ଟାଣିକରି ଦଉଡ଼ି ବାନ୍ଧି ଦେବ, ଯେମନ୍ତ ତ ଭିତରକୁ ପଶି ପାରିବ ନାହିଁ । ନ ହେଲେ ଫିଟିପିଟି ଗୋଟିଏ ମାରି ଘିଅତେଲରେ ଘସିବ, ଶୁଖିଲା କୁକୁରଗୁହ, ହଳଦୀଗୁଣ୍ଡ, ସୋମରାଜମଞ୍ଜି ମିଶାଇ ଚୂରିବ । ଏହି ଗୁଣ୍ଡକୁ ତିନି ଦିନ ଖୁଆଇଲେ ଅଣ୍ଡକୋଷ ରୋଗ ଶୀଘ୍ର ଆରୋଗ୍ୟ ହୁଏ ।

## ଖୁସଚ୍ଛ ରୋଗ ।

ବର୍ଷାକାଳରେ ଘୋଡ଼ାର ଦେହରେ, ମୁହଁରେ, ପିଠିରେ ଘା ହେଲେ ତାକୁ ବର୍ଷାକାଳ ରୋଗ ବୋଲି ଜାଣିବ । ତହିଁର ଉପାୟ —ଘୋଡ଼ାବଚ ଘୋଡ଼ାମୂତରେ ବାଟିକରି ଖୁଆଇବ । ଉପରଓଳି ମସଲା ଦେବ । ବରଗଛର ଖଣ୍ଡେ ଅଣି ତେଲ ଛଡ଼ାଇ ଗୁଡ଼ଲଧୁଆ ପାଣିରେ ବାଟି ଲେପ ଦେବ । କୁସୁମତେଲ ଅଣି ସିଝାଇ ତାର ପାଣିରେ ଘା ଧୋଉଥିବ । ଲେପ ଦିନକୁ ୫ ଥର ଦେଉଥିବ । ଏରୂପ କଲେ ରୋଗ ୧୦ ଦିନରେ ଭଲ ହୁଏଇ ।

## ତଙ୍ଗ ଲାଗି ପେଟରେ ଘା ହେଲେ ।

ଘାରେ ଘିଅ ଲଗାଉଥିବ । ଅଉ କୋଚିଲା କାଠ ପୋଡ଼ିକରି ତାର ଗୁଣ୍ଡ ଦେଉଥିବ । ଙ୍କରେଇ ଦେଲୁପତ୍ର ଶୁଖାଇ ତାର ଗୁଣ୍ଡ

ଦେବ । ଘା ଗଣ୍ଡ ବୋହିଲେ ଲୁହା ତତାଇ ଛାଞ୍ଚି ଦେବ । ଉଷୁନା ଧାନ, ମାଣ୍ଡି ଅର ମୂଳ, ଉଅଗୃଭଲ ମଣ୍ଡରେ ବାଟି ଲେପ ଦେବ । ପୁରୁଣା ଚମ ପୋଡ଼ିକରି ସେ ଘାରେ ଲେପ ଦେଉଥିବ । ନ ହେଲେ ଘିଅ-କନା ପକାଇବ । ଘା ବଡ଼ ହୋଇ ଶୋଷି ପଡ଼ିଲେ ମଇରଗିରିଆ ପୋଡ଼ି କରି ସିପଚୂନ ମିଶାଇ ସେ ଘାରେ ଦେଲେ ଘାକୁ ସଫା କରି ଦେବ । ପରେ ଘାକୁ କଷପାଣିରେ ଧୋଇ ମଲମପଟି ଦେଇଦେବ । ଏରୂପ କଲେ ସବୁ ପ୍ରକାର ଘା ଭଲ ହୁଏ ।

## ଘୋଡ଼ାର ନାକରୁ ବହଳ ହୋଇ ସିଘାଣି ବାହାରିଲେ ।

ଘୋଡ଼ାକୁ ବଢଶା ମସଲା ଦେବ । ପରେ ଘୋଡ଼ାର କାନରେ ଲେମ୍ବୁରସ ଚୁପୁଡ଼ିବ । ମୁସବର, ମରିଚ, ହଳଦ, ରସୁଣଚୋପା ଚକଣ କରି ବାଟିବ । ଅଉ ଗୋଟିଏ ବହଳକନାରେ ଦେବ । ଏରୂପ କଲେ ଶୀଘ୍ର ବେଦନା ଭଲ ହୁଅଇ । ଅଥବା ବଲବନ୍ତ ହେଲେ କାନମୂଳ ଫୁଲିବ । ଫୁଲିଲେ ଦା ତତାଇ ଛାଞ୍ଚି ଦେବ । ଗରମମସଲା ଦେଉଥିବ । ଗୃହ ପାଞ୍ଚ ଦିନରେ ବେଦନା ଶାନ୍ତ ହେବ ।

## ପୁଷ୍ଟିକାରକ ।

ଘୋଡ଼ା ଦେହ ଦୁର୍ବଳ ହୋଇଥିଲେ ତହିଁର ଔଷଧ—ବଡ଼ସବାକୁ କଞ୍ଚାହଳଦ, ଅଦା, ଝୁଣ୍ଟ ଗୁଣ୍ଡ କରି ଏକୋଇଶ ଦିନ ଖୁଆଇବ । ଏପ୍ରକାର କଲେ ଦେହକୁ ଦିନ ଡାଢ଼ା ହେବ ଓ ନୀରୋଗୀ ହେବ ।

## ମୁଗାଇ ରୋଗ ।

ଘୋଡ଼ାକୁ ତତଲା ଦାନା ଦେଲେ ତୁଣ୍ଡପାକ ଫୋଟକା ପଡ଼ି-ଯାଏ । ତହିଁର ଉପାୟ—ଉସୁନା ଧାନ, ଲୁଣ, ସୋରିଷ ସମଭାଗରେ ଚୂରିବ, ପରେ ତୁଣ୍ଡ ଭିତରେ ଗୁଣ୍ଡ ମୁଠିଏ ଦେଇ କନା ଖଣ୍ଡିକରେ

ପୋଛି ଦେବ, ରକ୍ତ ଗନ୍ଧ ଯରି ପୋଛି ଦେବ, ଫେର ସେ ରକ୍ତ ଟଣା ସ୍ଥାନମାନଙ୍କରେ ହଳଦୀଗୁଣ୍ଡ ବହଳ କରି ଦେବ, ବିଭଣା ମସର୍ଣ୍ଣ ଦେବ । ଏପ୍ରକାର କଲେ ଉପରୋକ୍ତ ରୋଗ ଭଲ ହୁଏ ।

## ଘୋଡ଼ାଟିଙ୍କ ।

ଘୋଡ଼ା ଦେହରେ ଟିଙ୍କ ଲାଗିଥିଲେ ଲଣ୍ଡାବାବୁଲମଞ୍ଜି, ଡ଼ାଳ ଓ ମୂଳରେ ଲୁଣ ଅଧ ସେର ପକାଇ ବାଟିବ ଓ ଦେହରେ ଘଷିବ, ପରେ ବଳାମୁଣ୍ଡିକା ଓ ଲୁଣ ବାଟି ଦେବ, କାକଡରେ ବାନ୍ଧିବ, ଆର ଦନ୍ତ ଗାଧୋଇ ଅଣିବ । ଏରୂପ କଲେ ଟିଙ୍କ ମରଯାଏ ।

## ପୁରୁଣା ବଥାକୁ ।

ଘୋଡ଼ା ଦେହରେ ପୁରୁଣା ବଥା ଅଛିଲେ କୁକୁଡ଼ା ମାଂସକୁ ହଳଦୀପାଣିରେ ସିଝାଇ ପରେ ଲୁଣ ପକାଇବ, ଘିଅ ୧ ସେର, ତେଲ ଅଧ ସେର, ପିପଳ ଦେଢ଼ ତୋଳା ଗୁଣ୍ଡ କର ସେ ତେଲ, ଘିଅ ମାଂସ ପରେ ପକାଇବ । ଏ ଗୁଣ୍ଡମାନ ପକାଇକର ଗନ୍ଧସ୍ୱର ରାମ୍ଫା ଗୁଣ୍ଡ ପକାଇ ବେଳ ଦ୍ୱିପ୍ରହରଠାରେ ଖୁଆଇବ, ବିଭଣା ମସର୍ଣ୍ଣ ଦେବ । ଏପରି ମାସେ ଖୁଆଇଲେ ପୁରୁଣା ବଥା ଦୂର ହୁଏ ।

## ସିହର ଫଗୁନ ।

ସିହଂର ଫଭଅର କରବାର ବିଧି —ଶଙ୍ଖ, ଦାରୁମୂଷି ୧ ମାଢ଼, ହିଙ୍ଗୁଳ ୩ ମାଢ଼, ଖଇର ୩ ମାଢ଼, ଠାଙ୍ଗଣା ୩ ମାଢ଼; ଠାଙ୍ଗଣାକୁ ନିଆଁରେ ପୋଡ଼ିବ, ସେ ଚାରି ପଦାର୍ଥ ସଙ୍ଗରେ ଖଲରେ ପକାଇ ଅଦାରସରେ ବାଟିବ, ଅଦାରସ ଯେତେ ପଡ଼ିବ ତେତେ ଦେଉଥିବ । ସେ ସବୁ ଲମ୍ବା ଧରଲେ ବଡ଼କାନ୍ଦୁଲ ପରି ଗୋଲା କରବ । ଛାଇରେ ଶୁଖାଇ ରଖିବ । ବେଳ ଦୁଇ ଘଡ଼ି ଉତ୍ତାରୁ କଂଅଲାଘାସରେ ବଡ଼ ଘୋଡ଼ାକୁ

୬ ଗୋଟି ଓ ପାନ ଘୋଡ଼ାକୁ ୧ ଗୋଟି ଲେଖାଏଁ ଦେଲେ ଘୋଡ଼ା-ମାନେ ମୋଟା ଓ ତାଜା ରହନ୍ତି । ସବୁଦିନେ ମଧ୍ୟ ଏ ଉପଗ୍ରହ କରିବ ।

## ମୂସମ୍ବରଚୂର୍ଣ୍ଣ ।

ହିଙ୍ଗୁଳ ୩ ତୋଳା, ଯୁଆଣି ୩ ତୋଳା, ମହୁରି ୩ ତୋଳା, କୁଳୁଖ ୩ ତୋଳା, କୁଟ ୩ ତୋଳା, ଘିଅ ୧୬ ତୋଳା, ମୁସମ୍ବର ୩ ତୋଳା ଏକତ୍ରରେ ଜଳରେ ବାଟିବ । ପୂର୍ବପ୍ରାପ୍ତ ଅଧାରପରେ ଗୃହ ପାଞ୍ଚ ଦିନ ପର୍ଯ୍ୟନ୍ତ ରସ ପକାଇ ବାଟୁଥିବ । ପରେ ଛାଇରେ ଶୁଖାଇବ । ମାଝେ ମାଝେ ଲେଖାଏଁ ଗୁଳା କରି ଶୁଖାଇବ । ଉତ୍ତମ କଳା ଗୋଟିକରେ ରଖିଥିବ । ୩ ଦିନରେ ଗୋଟିଏ ଲେଖାଏଁ ମାତ୍ରା ଘାସରେ ଦେଲ ଦୁଇ ଘଡ଼ିପରେ ଖୁଆଇଲେ ଘୋଡ଼ା ନୀରୋଗୀ ହୋଇଥାଏ । ମୋଟା ମଧ୍ୟ ହୁଅଇ । ଦେହର ଯାବତ ବ୍ୟଥା ଛାଡ଼ଇ । ଛୁଡ ହରଥିଲେ ଏ ଔଷଧ ଧନ୍ୱନ୍ତରିସମାନ ଗୁଣ କରଇ ।

## ଦମାରୋଗ ।

ଘୋଡ଼ା ଚଢ଼ା କରିବା ସମୟରେ ସାହସି କରି ଦମ ରହିଗଲେ ତହିଁର ଉପାୟ—ମୁଗଅଟା ୧ ସେର, ସାଦେଜ ପାଏ, ମଞ୍ଜିଷ୍ଠା ପାଏ, ମୁସମ୍ବର ୪ ତୋଳା, ପାନ ଗବରସ ପାଏ, ଗୃନ୍ଧସ୍ୱର ପାଏ, କଳାଜିରା ପାଏ, ରସୁଣ ପାଏ; ଏ ସବୁ ଗୁଣ୍ଡ କରିବ, ସୋରିଷ ତେଲରେ ଗୁଳା କରିବ, ଦୁଇଓଳ ଖୁଆଇବ, ଘୋଡ଼ାକୁ ଚହଲାଉଥିବ, ତାତଲା ପାଣି ଶୀତଳ କରି ଦେଉଥିବ, ଦାନା ତୃଣ କରି ଦେବ । ଏରୂପ ୧୦ଦିନ କଲେ ରୋଗ ଭଲ ହୁଏ ।

## ନଖୁରି ରୋଗ ।

ଘୋଡ଼ାମାନଙ୍କ ଦେହରେ ମାଂସ ଲାଗଇ ନାହିଁ, ଦୁର୍ବଳ ହୋଇ-ଯାଏ । ତହିଁର ଉପାୟ—ଘୋଡ଼ାର ନାକପୁଡ଼ା ଦୁଇ ପାଖରେ ଦୁଇ

ଖଣ୍ଡ ହାଡ ଥାଏ, ସେ ହାଡ ଥିଲେ ଘୋଡ଼ା ଅସ୍ପଷାଏ କିଛି ନ ଖାଏ, ଦିନକୁ ଦିନ ଦୁର୍ବଳ ହୋଇ ପ୍ରାଣନାଶ କରଏ । ଜାଣିବା ଲୋକ ହାତରେ ସେ ହାଡ଼ କଟାଇଦେବ, ସେ ଘାରେ ଦେବ ମସଲା—ହଳଦି ଗୁଣ୍ଡ ମିଶାଇକରି ଦେବ, ଘୋଡାକୁ ବାନ୍ଧିଲାଠାବରେ ପାଣି ଦେବ, ମସଲା ହଳଦିଗୁଣ୍ଡ, ଯୁଆଣି, ସୋମରାଜି, ବଚ, ଲୁଣ, ଧୂଆଁପତ୍ର, ରାଇ । ଏ ସବୁ ପାଣିରେ ବାଟି ଘୋଡାକୁ ପିଆଇବ । ଏରୂପ କଲେ ଘୋଡ଼ାର ଦେହ ମୋଟା ହୁଅଇ । ୨୧ ଦିନ ଔଷଧ କରିବାକୁ ପଡ଼ିବ ।

## ଗଣ୍ଠିବାତ ।

ଗଣ୍ଠି ବଥା କଲେ ଘୋଡ଼ା ଚାଲି ପାରେ ନାହିଁ, ଆଉ ଗଣ୍ଠି ଫୁଲି-ଯାଏ । ଏହାଙ୍କ ଉପାୟ—ଘୋଡ଼ାକୁ ଠିଆକରାଇଥିବ, ବେତକୁଆପତ୍ର, ଅରଖପତ୍ର, ଦୁଦୁରାପତ୍ର, ବାସଙ୍ଗପତ୍ର, ଉଙ୍କାଠ; ଏହି ପାଞ୍ଚ ପତ୍ର ଆଣି ମଇଁଷି ଗୋବରରେ ପାଣି ପକାଇ ଏ ପତ୍ର ଦେଇ କଅଁରେ ଉତ୍ତାଇବ, ପରେ ଉଷୁମ କରି ସେ ବଥାମାନଙ୍କରେ ମାରିବ, ବାଡ଼ିରେ କଳା ଖଣ୍ଡିଏ ଚଢ଼ାଇ ସେ ପାଣିରେ ବୁଡ଼ାଇ ମାରିବ, ଦନ୍ତ ମଧ ବାନ୍ଧିବ, ଚାଙ୍ଗୁଡ଼ିଆ ଦଳ ଛେଚ ତେଲରେ ଖରଡ଼ି ପଟ୍ଟ ବାନ୍ଧିଲେ ଭଲ ହୁଅଇ ।

## ଖୋଲବାତ ।

ଘୋଡ଼ାର ସନ୍ଧି ଯାଗାମାନଙ୍କରେ ବାତ ହେଲେ ତାହାଙ୍କ ଔଷଧ—ଶୁଣ୍ଠି ଓ ଲବଣ କରି ଚୂରିବ, ଗୁଆଘିଅରେ ପକାଇ ଅଉଟିବ; ବହଳ ଯାଉ ପରି ହେଲେ ଓହ୍ଲାଇବ, ଉଷୁମ ଥାଉ ଥାଉ ବଥା ଯାଗା-ମାନଙ୍କରେ ଘଷିବ । ୨ ଭାଗ ଘୋଡ଼ାବଚ, ୨ ଭାଗ ମରିଚ, ୨ ଭାଗ ଗୁଗୁଳ, ୨ ଭାଗ ଗନ୍ଧସ୍ପଷ୍ଟ, ୫ ଭାଗ ସୋମରାଜି, ୩ ଭାଗ ଶୁଣ୍ଠି, ୨ ଭାଗ ଛଟିଙ୍କି, ୨ ଭାଗ ରାସ୍ନା, ୨ ଭାଗ ଦହଣାମୂଳ, ଉପୂର୍ଣ ୧ ଭାଗ, ରକ୍ତଚନ୍ଦନ ୩ ଭାଗ, ଅଦା ୨ ଭାଗ, ରାଇ ୨ ଭାଗ, ହଳଦି ୨ ଭାଗ ।

ଏ ସବୁ ଗୁଣ୍ଡ କରିବ, ଫୁଲ ମହରେ ଚନ୍ଦନ ଦୁଲା କରିବ, ଘଣ୍ଟ ପତ୍ର ପାଣି ବଥାଯାଗାରେ ମାରୁଥିବ । ଏରୂପ କଲେ ସାତ ଦନରେ ବାତ ରୋଗ ଭଲ ହୁଏ ।

## ଜ୍ୱର ।

ଘୋଡ଼ାକୁ ଜ୍ୱର ହେଲେ ଘୋଡ଼ା ଉଠି ବସୁଥିବ, ଆଖି ଲାଲ ଦଶୁଥିବ । ଏପର ହେଲେ ଜ୍ୱର ରୋଗ ବୋଲି ଜାଣିବ । ତହିଁର ଉପାୟ—ଘାସ ପାଣି ନ ଦେବ, ଦେହଠାରୁ ଚୋଡ଼ ପର୍ଯ୍ୟନ୍ତ କଗା ଘୋଡ଼ାଇବ, ଅନ୍ତରରେ ନଆଁ ଜାଳିବ, ପବନ ନ ବାଜିବା ଯାଗାରେ ଘୋଡ଼ାକୁ ବାନ୍ଧିବ, କାନରେ କନା ମୂଦିବ । ହଳଦ, କଣ୍ଟେଇ, ବଚ, ବଡ଼ଙ୍ଗ, କଳାଜିରା, ଶୁଣ୍ଠି, ପିପ୍ପଳି, ସୋମରାଜ, ଯୁଆଣି, ଘୋଡ଼ାଲୁଣ, ଲଙ୍କାମରଚ, ଠାଙ୍ଗଣା କୁଟିବ, ପୋଲଷ ତେଲରେ ଗୁଳା କର ଦୁଇଓଳି ଖୁଆଇବ, ସେଦନ ଘାସ ପାଣି ଦେବ ନାହିଁ, ଘୋଡ଼ାକୁ ଉପରୋକ୍ତ ଔଷଧରେ ବାଫ୍ର କରାଇବ, ବାଫ୍ର କଲେ ଘାସ ଅଳପ ଦେବ । ଏପର ତନ ଦିନ କଲେ ରୋଗ ଭଲ ହୁଏ ।

## ଗଣ୍ଡ ଘା ।

ଘୋଡ଼ା ଦେହରେ ବଡ଼ ବଡ଼ ବଷମ ଘାମାନ ହୋଇଥିବ, ତଳ ପାଦରେ ଘା ହୋଇ ଘାସ ଗନ୍ଧ ପଡ଼ୁଥିବ, ପାଣି ପିଇଲେ ବଳୁଥିବ କିମ୍ବା କୌଣସି ସନ୍ଧିସ୍ଥାନମାନଙ୍କରେ ଅସାଧ୍ୟ ଘାମାନ ହୋଇଥିବ ବା ବାତରୁ ଘା ହୋଇ ବଷମ ପୀଡ଼ା-କରୁଥିଲେ ତାହାକୁ ଗଣ୍ଡ ଘା ବୋଲନ୍ତି । ତାହାର ଔଷଧ—ନତ୍ୟ ସେ ଘା ସବୁକୁ କଷପାଣିରେ ଧୋଉଥିବ, ପୁରୁଣା ବଟ ଗଛର ଚେର ଦୁଇ ହାତ ଗଭୀରରୁ ଆଣିବ, ସେ ଚେରକୁ ସଫା ମାଟି ଛଡ଼ାଇ ଧୋଇ ଦେବ, ତାର ଛେଲଗୁଡ଼ିକ ଗାଈଗୁଡ଼ କଥିଆପାଣିରେ ବଟଣ କର ବାଟିବ, ଗୋଟିଏ ନଡ଼ିଆସତାରେ

ଫୁଟାଇ ଘୋଡ଼ାଇ ରଖିବ, ଅଉ ଦୁଇଓଳି ଘାକୁ କଷପାଣିରେ ଧୋଇ ଲେପ ଦେବ । ଘା ଭିତରକୁ ବୋଲି ଖୁନ୍ଦି ଖୁନ୍ଦି ପୂରାଇବ, ଘା ବଢିଲା ବାହାରେ ମଧ କଷପାଣିରେ ଧୋଇବାର ଔଷଧ ଦେଉଥିବ, ଔଷଧ ଶୁଖିଗଲେ ଗୁଡ଼ୁଲଧୁଆ ପାଣିରେ ବାନ୍ଧିଥିବ, ପୋଚନ୍ତା ଭଳି ଦେବ ନାହିଁ । ଏପରି କଲେ ଏକ ମାସରେ ଘା ଭଲ ହୁଅଇ । ନ ହେଲେ ଘାକୁ ପୋଡ଼ିଦେବ । ପରେ ଏ ଔଷଧ ଲଗାଇବ ।

## ବାତ ରୋଗ ।

ଘୋଡ଼ାର ଗୋଡ଼ରେ କି ଅଙ୍ଗରେ ବାତ ଧରିଥିଲେ ତହିଁର ଔଷଧ—ହଳଦିଗୁଣ୍ଡି, ବଚ, ଯୁଆଣି, ଶୁଣ୍ଠି, ଯୋମରାଜ, ଲଙ୍କାମରିଚ, ଗନ୍ଧସୁରା, ଉସୁଣ, ଗୁଗୁଳ, ଘୋଡ଼ାଲୁଣ, ମୂତଙ୍ଗାମୂଳର ଛେଲି, ଅରଖମୂଳର ଛେଲି, ଦୁଦୁରାମୂଳର ଛେଲି, ଦହଣାମୂଳର ଛେଲି । ଏହା ସବୁ ସମଭାଗରେ କୁଟିବ । ସେ ଗୁଣ୍ଡକୁ ରମ୍ଭା ଇଡ଼ାତେଲରେ ଗୁଳା କରିବ । ଘୋଡ଼ାକୁ ୩ ଦିନ ଖୁଆଇବ । ଏପରି କଲେ ଭଲ ହୁଏ ।

## ଅଜୀର୍ଣ୍ଣ ହାଲୁଚ ।

ଘୋଡ଼ାକୁ ଅଜୀର୍ଣ୍ଣରୁ ହାଲୁଚ ଅସୁଥିଲେ ତହିଁର ଉପାୟ—ବଙ୍ଗଳା ପାନ, ମରିଚ, ଶୁଣ୍ଠି, ପିପଳି, ଯୁଆଣି, ସୈନ୍ଧବ ଲବଣ, ହରଡ଼ା । ଏତେ ଦ୍ରବ୍ୟ ସମଭାଗ କରି ପାଣିରେ ଚକଟି ଗୁଳାକରି ଖୁଆଇବ, ସେଦିନ ପାଣି ନ ଦେବ, ଆର ଦିନ ଶୀତଳ କରି ଗରମ ପାଣି ଦେବ । ଏପରି କଲେ ଅଜୀର୍ଣ୍ଣ ହାଲୁଚ ଭଲ ହୁଏ ।

## ଜ୍ୱର ରୋଗ ।

ଘୋଡ଼ାକୁ ଜ୍ୱର କଲେ ଘାସ ପାଣି ନ ଖାଇ ଦେହ ଅଉଁଥିବ । ଏପରି ହେଲେ ଜ୍ୱର ହେଲା ବୋଲି ଜାଣିବ । ତହିଁର ଔଷଧ—କଟୁକି, ମରିଚ, ଯୋମରାଜ, ଗନ୍ଧସୁରା, ଘୋଡ଼ା, ଫିଟକିରି; ଏତେ

ଦ୍ରବ୍ୟ ଏକତ୍ରରେ ଗୁଣ୍ଡ କରିବ, ନାକଚଣା ଅଟା ୧ ସେର ମିଶାଇ ଗୋଟିଏ ନୂଆ ହାଣ୍ଡିରେ ରଖିବ, ଏହି ଗୁଳାକୁ ଗୋଟିଏ ଲେଖାଏଁ ଝଅଁଳ ଘାସରେ ଖୁଆଇବ, ପାଣି ମାଗିଲେ ଟିକିଏ ପାଣି ଦେବ, ଦାନା ଅଳପ କରି ଦେବ । ଏପ୍ରକାର କଲେ ଛଅ ଦିନରେ ଜ୍ୱର ଭଲ ହୋଇଯାଏ ।

## ଘୋଡ଼ାର ଆଖିରେ ରକ୍ତ ବସିଲେ ।

ଶୁଖିଲା ପିଆଜ, ମଣିସିଲ ୨ ଟଙ୍କା, ଲବଙ୍ଗ ୨ ଟଙ୍କା, ମରିଚ ୨ ଟଙ୍କା, ହରଡ଼ାମଞ୍ଜିର ରସ ୨ ଟଙ୍କା, ବାହାଡ଼ାମଞ୍ଜିର ରସ ୨ ଟଙ୍କା, ପଦ୍ମମୂଳ ରସ ୨ ଟଙ୍କା, ଶ୍ରୀକର୍ପୂର ୨ ଟଙ୍କା; ଏତେ ଦ୍ରବ୍ୟ ଛେଳି ଦୁଧରେ ଖଲରେ ବାଟିବ । ଅଞ୍ଜନ କରି ଆଖିରେ ଲଗାଇଲେ ସାତ ଦିନରେ ରୋଗ ଭଲ ହୁଏ ।

## ବଳ ହେବାପାଇଁ ।

ଗହମ ଗୁଣ୍ଡ ୧ ସେର ଗାଈଦୁଧ ୧ ସେରରେ ଗୁଳା କରି ଖୁଆଇବ । ନ ହେଲେ ମେଥିଗୁଣ୍ଡ ଦୁଧ କରି ଖୁଆଇବ, ଚିନି ପରିମାଣ ଦେଇ ଖୁଆଇବ । ଏପ୍ରକାର ଏକ ମାସ କଲେ ଘୋଡ଼ା ଦେହରେ ବଳ ହୁଏଇ ଓ ମୋଟା ତାଜା ହୁଏଇ ।

## ଋତୁ ମସଲା ।

ବର୍ଷାଦିନରେ ଘୋଡ଼ା ଦେହ ଗରମ ଥାଏ । ତହିଁ ମସଲା ଓ ଉପାୟ—ମରିଚ, ଲବଙ୍ଗ, ଯୁଆଣି, ସୋମରାଜମଞ୍ଜି, ବଡ଼ଙ୍ଗ, ହଳଦି, ସୈନ୍ଧବ ଲୁଣ । ଏତେ ଦ୍ରବ୍ୟ ଏକତ୍ରରେ ଚୂର୍ଣ୍ଣ କରି ବର୍ଜ୍ଜ ସକାଳୁ ଖୁଆଇବ । ଏପରି କଲେ ଘୋଡ଼ା ନୀରୋଗୀ ହୋଇ ପାରେ ।

## ଘା ପୋକ ।

ଘୋଡ଼ା ଦେହରେ ଘା ହୋଇ ପୋକ ପଡ଼ିଲେ ଡ଼ିମ୍ବିର ଦୁଧ ପକାଇଲେ ପୋକ ମରଇ, ଘୃତର ତେଲରେ ପକାଇ ଘାରେ ପକାଇଲେ ପୋକ ମରଇ, ସେ ଘାକୁ କଷପାଣିରେ ଧୋଇ ବେଲୁପତ୍ର, ଧୂଆଁପତ୍ର ବାଟିବ ଓ ସେ ଘାରେ ଯେବେ ପ୍ରକାର ପୋକ ହେଲେ ଅବଶ୍ୟ ମରିଯିବେ ନ ହେଲେ ମାଣ୍ଡିଅଚୂନା, ସିତାଫଳପତ୍ର, ଧୂଆଁ ଓ ତେଲ ବାଟି ଦେଲେ ଅବଲମ୍ବରେ ପୋକ ମରିଯିବେ ।

## ଗରମ ମସଲା ।

ଯୁଆଣି, କଟୁକ୍ରୀ, ମରିଚ, ବଚ, ଧୂଆଁ, ରାସ୍ନା, ରସୁଣ, ସୋମରାଜ, ବିଡ଼ଙ୍ଗ, ଶୁଣ୍ଠି, ଅକରକରା, ଗନ୍ଧସୁରା ପ୍ରତ୍ୟେକ ଏକପଲ; ପିପଳ ୨ ପଲ, ହଳଦ ୨୬ ତୋଳା, ଅଷ୍ଟୁ ୧ ତୋଳା, ମୁସମ୍ବର ୨ ତୋଳା, ହିଙ୍ଗୁ ୧ ତୋଳା, ଗୁଡ଼ ଅଧ ସେର । ଏ ଦ୍ରବ୍ୟ ସବୁ କୁଟିକରି ଗୁଡ଼ ମିଶାଇ ବେଲ ପ୍ରମାଣେ ଖୁଆଇବ ।

## ବାତ ମସଲା ।

ଦୁଦୁରା, ଅରଖ, ଡ଼ାଙ୍କାର, ଅଯାତୁଆ, ଦୁଡ଼ୁମି, ବେଗୁନିଆଁ, ବାଣିଆ, ଚଣାଯାରୁ, ବୃଦ୍ଧଦାରକ, ବାସଙ୍ଗ, କ୍ଷୀରକାଷ୍ଟୁଲ, ଧାଭୁଙ୍ଗା, ପେଙ୍ଗୁ, ମରିଚ, ହରିଡ଼ା, ରସୁଣ, ଧୁଆଁ, ପ୍ରିୟଙ୍ଗୁ, ହିଙ୍ଗୁ ପ୍ରତ୍ୟେକ ଏକପଲ, ଗୁଡ଼ ୫ ପଲ, ହଳଦ ୨ ପଲ, ଅଫୁ ୨ ତୋଳା; ଏ ସବୁ ମସଲା କୁଟିକରି ବେଲ ପ୍ରମାଣେ ଖୁଆଇଲେ ବାତ ରୋଗ ଶାନ୍ତ ହୁଏ ।

## ରକ୍ତପ୍ରସ ।

ଘୋଡ଼ା ରକ୍ତ ମୁତିଲେ ତହିଁର ଉପାୟ—ମୁଗ ୨ ଅଡ଼ା, ଲବଙ୍ଗ ୨ ତୋଳା, ଅଳାଇଚ ମେଥି ୨ ଅଡ଼ା, ନବାତ ୧ ସେର, ସୁଗନ୍ଧମୂଳ ୨ ପଳ; ସବୁ ବଟାଇ ବାଟିକରି ଖୁଆଇଲେ ରୋଗ ଭଲ

ହୁଏ । ଅନ୍ୟ ପ୍ରକାର — ଦେବଦାରୁ, ମରଚ, ଚନ୍ଦନ, ଏ ଯେତେ ଫୁଟୁକାକୁଡ଼ି ହେବେ, ଏ ସମସ୍ତେ ଯେତେ ରଙ୍ଗଙ୍କର ମାଠି ହେବେ । ଏହାକୁ କୁଟି ଖଣ୍ଡ ମିଶାଇ ଖୁଆଇଲେ ଭଲ ହୁଅଇ ।

### ରକ୍ତବସା ।

ଘୋଡ଼ାର ଖତରେ ରକ୍ତ ବସିଲେ ତହିଁର ଔଷଧ । ଲେପ — ମୈସମ୍ଭର ୨ ତୋଲା, ଶୁଣ୍ଠି ୨ ତୋଲା, ମରିଚ ୨ ତୋଲା, ବଚ ୨ ତୋଲା, ଗନ୍ଧମପଚା ଅର୍ଦ୍ଧ ସେର, ବରିଚୂନା ୧ ଅଡ଼ା, ହୁଡ଼ୁପି ଟେର ୨୨ ତୋଲା; ସବୁ ବାଟି ଲେପ ଦେବ, ତହିଁ ତପ୍ତସ ଦେଖାଇବ । ଏପରି କଲେ ରକ୍ତବସା ଭଲ ହୁଅଇ ।

### ରସଉତୁରା ।

ଘୋଡ଼ାର ଗୋଡ଼ରେ ରସ ଉତୁରିଲେ ତହିଁର ଔଷଧ — ଧୂଆଁ ମଇରଗିଣ୍ଡ ଚୂରି ରସ ଫୁଟିବାଯାଗାରେ ଦେବ । ଏପରି କଲେ ଭଲ ହୁଏ ।

### ଶୂଳରୋଗ ।

କୁଥଣି, ମରଚ, ପିପଳ, ଇନ୍ଦ୍ରାମଡ଼ଚ, ସୋମରାଜ, ପୁରୁଣା ଚନ୍ଦନମୂଳ, ମୁର୍ସମ୍ଭର, ହଙ୍ଗୁ, ଧୂଆଁ, କଟ୍‌କି; ସବୁ ସମାନ କରି ଗୁଡ଼ ମିଶାଇ ଖୁଆଇବ ।

### ଘାକୁ ମଲମ ।

ଅରକ୍ଷୀର, ତରାପାରୁଟେର, ସିନ୍ଦୂର ତେଲରେ ଫଟାଇ ମାରକ୍ଷ ପରେ ଚକଣ କଣ୍ଟ ବାଟିବ । ଘାରେ ମଲମ ପଟି ଦେବ ।

## ଅଣ୍ଡକୋଷକୁ ଲେପ ।

ହୁହୁରିମୂଳ, ଗାଗୁଣ୍ଡିମୂଳ, ପଦ୍ମମୂଳ, ଜମ୍ବୁପତ୍ର, ଗନ୍ଧ, ବେଣା, ବର; ଏ ସବୁ ବାଟି ଲେପ ଦେବ ।

## ଜହରବାଡଙ୍କୁ ଲେପ ।

ଗୁଗୁଳ, ସଦ୍ଧଳସ, କରଞ୍ଜାଛେଲି, ଭାଦୁର, ହିଙ୍ଗୁଳଛେଲି, କପାମଞ୍ଜି, ଛେଳଲେଣ୍ଡୀ, ଛେଳଦୁଧରେ ବାଟି ଜହରବାଡରେ ଦେବ, ଚଟୁ ତତାଇ ଦେଖାଇବ । ଏ ଲେପ ଦେଲେ ଶୀଘ୍ର ଆରୋଗ୍ୟ ହୋଇଯାଏ ।

## ହିକା ରହିବାକୁ ।

ଶୁଣ୍ଠି, ଜଜାଙ୍ଗିଚେର, ଲବଙ୍ଗ, ଜିରା ବାଟି ଖୁଆଇବ । ଏପରି କଲେ ହିକା ବନ୍ଦ ହୁଅଇ ।

## ପେଟର ନାନା ବ୍ୟଥା ।

ଯୋଡ଼ାଚ, ମରଚ, ପାନବର୍ଣ୍ଣ, ଶୁଣ୍ଠି, ପିପଳ, ପିପଳାମୂଳ, ଯଅଣି, ସୋମରାଜମଞ୍ଜି, ହିଙ୍ଗୁ, କଟୁକି, ଗୁଗୁଳ, ଟାଙ୍ଗଣା, ରାଇ, ଲବଣ, ଧୂଅଁ ପତ୍ର, ଅଳକୁ, ମହାକାଳମୂଳ ସବୁ କୁଟି ଦେବ; ସୋରିଷ ତେଲରେ ଗୁଳା କରି ଦିନକୁ ତିନି ଥର ଖୁଆଇବ । ଏରୂପ କଲେ ନାନାପ୍ରକାର ବ୍ୟଥାମାନ ଦୂର ହୋଇବ ।

## ହଡ୍ଡା ରୋଗ ।

ଯେଉଁ ନାସିକା ମଧ୍ୟରେ ଫୁଲଇ, ଘୋଡ଼ା ଦୁର୍ବଳ ହୁଅଇ, ଯାହା-ଖାଇଲେ ନ ପଚଇ, ଦେହରେ ନ ଲାଗଇ, କ୍ଷୀଣ ହୁଅଇ । ଏରୂପ ହେଲେ ହଡ୍ଡା ରୋଗ ବୋଲି ଜାଣିବ । ଏଥିକୁ ଔଷଧ—ତୁଣ୍ଡରେ ଲଙ୍କାଲୁହା ଦେବ, ଦାନ୍ତମୂଳରେ ଖାଲି ଲୁହା ଦେବ, ବଳଦା

ମୋଟ କଉ ବଳ ସେ ବଳଭାକୁ ଘିଅରେ ବୁଡ଼ାଇ ଦାନ୍ତମୂଳରେ ଘଷାଇ ଲୁଗା ବାନ୍ଧିବ । ଏରୂପ କଲେ ଭଲ ହୁଅଇ ।

### ଛନକା ରୋଗ ।

ରସାଞ୍ଜନ ଓ ହରତାଳ ଏ ଦୁହିଁଙ୍କ ଶୋଧନ କରିବ। ପିପଳି, ମରିଚ, ସିନ୍ଦୂର, ଯାଇଫଳ ଏହା ସମାନଭାଗରେ ଜମ୍ବିର ରସରେ ମର୍ଦ୍ଦନ କରିବ, ଲଙ୍କାକାଲରସରେ ମର୍ଦ୍ଦନ କରିବ, କର୍ପୂର ମିଶାଇ ଲେପ ଦେବ, ଏଥିରେ ଭଲ ନୋହିଲେ କେରାଣ୍ଡୀ ମାଛ ପିତ୍ତ, ଛେଳି ପିତ୍ତ, ଫିଟ୍‌କିରି ମିଶାଇବ, ଘିଅକୁଆଁରୀ ରସରେ ମର୍ଦ୍ଦନ କରିବ । ଚକ୍ଷୁରେ ଲେପ ଦେଲେ ଭଲ ହୁଅଇ ।

### ଚକ୍ଷୁଫୁଲ୍ଲ ମାଂସ ବୃଦ୍ଧି ହେଲେ ।

କୋଇଲେଖା ମଞ୍ଜି, ଠାଙ୍ଗଣା, ଖାର, ଗଇସଫୁଲ ରସରେ ମର୍ଦ୍ଦନ କରି ଅଞ୍ଜନ ଦେଲେ ଚକ୍ଷୁର ମାଂସଫୁଲ୍ଲ ବନ୍ଦ ହୁଅଇ ।

### ଜିହ୍ୱାଶୂଳ ।

ଘୋଡ଼ାର ଜିହ୍ୱା ଫୁଲି ଜିହ୍ୱାମୂଳ ଫୁଲଇ । ଏରୂପ ହେଲେ ଜିହ୍ୱାଶୂଳ ବୋଲି ଜାଣିବ । ଅହାର ନ ଖାଏ । ଏଥିକୁ ଉପାୟ—ଅଲମ୍ବୁ; ଯୁଆଣି, ଗୁଡ଼, ହଳଦୀ, ଲବଣ; ଏହା ଏକତ୍ରରେ କୁଟି ଦିଆଇଲେ ଭଲ ହୁଅଇ ।

### ମୂତ୍ରକୃଚ୍ଛ୍ର ।

ଘୋଡ଼ା ମୁତି ପାରୁ ନ ଥିଲେ ଟିକିଏ ଟିକିଏ କରି ମୁତୁଥିଲେ ଏଥିକୁ ଔଷଧ—ହଳଦୀ, ଘଲଅ, ଅର୍ଖଫଳ । ଏ ତିନିଙ୍କ ସମାନ ଭାଗରେ ଠେଙ୍ଗ ରସରେ ମିଶାଇ ଗୋଟିଏ ଧ୍ୱଜ ଲିଙ୍ଗ ଛିଦ୍ରରେ ବାନ୍ଧିଲେ ଭଲ ହୁଅଇ ।

## ନାକରୁ ରକ୍ତ ପଡ଼ା ।

କୁଡ଼ି ତୁଳସୀପତ୍ର, ଧାରଞ୍ଜପତ୍ର, କଣ୍ଟପତ୍ର, କରଞ୍ଜପତ୍ର । ଏ ଗୁଡ଼ିକ ଗଛର କଅଁଳପତ୍ର ଛେଚି କନାରେ ଧରି ନାକରେ ନାସ ଦେଲେ ଭଲ ହେବ ।

## ନାକରୁ ପୋକ ପଡ଼ା ।

ନାକରୁ ପୋକ ବାହାରିଲେ ଉପାୟ—ଦେବଦାରୁ, ଗନ୍ଧଶୁଣ୍ଠି, ମରିଚ, ଶିଳା । ଏ ଗୁଡ଼ିକ୍ଙ୍କି ବାଟି ନାକରେ ଚପୁଡ଼ିଲେ ପୋକ ମରେ ।

## ଖଞ୍ଜ ରୋଗ ।

ଘୋଡ଼ା ଚାଲି ନ ପାରଇ, ଗୋଟିଏ ଗୋଡ଼ ଛୋଟାଉ ଥାଇ । ଉପାୟ—ଘୋଡ଼ାର ଗୋଡ଼ ବାନ୍ଧିବ, ଛୋଟାଇବା ଗୋଡ଼ ନ ବାନ୍ଧିବ, ଗୁଳୁଚି, ଗୁଡ଼, ଲୁଣ, ପାଠକ, ଶାଳମୂଳ, ମହୁଲ, ଡ଼ଙ୍କାର, ବଇଞ୍ଚ-ଓହଳ, ପିଅଜ । ଏହା ଗୋଡ଼ରେ ବାନ୍ଧିଲେ ଭଲ ହୁଅଇ ।

## ପାଣିଯବର ।

ଘୋଡ଼ା ଡ଼ାକଇ, ଛିଙ୍କଇ, ନାକରୁ ପାଣି ବହଇ, ମାଟି ଗୋଡ଼ରେ ଖୋଳଇ । ଉପାୟ—ଅଙ୍କୋନ୍ତ ଡ଼ାଳ ଓ ମୂଳ, ବାସଙ୍ଗ, ଡ଼ଙ୍କାର, ବେଗୁନିଆ, ହଳଦ, ରସୁଣ, ଲବଣ, ଘିଅ । ଏହା ସମାନ ଭାଗରେ ବାଟି ପିଅରେ ଖୁଆଇଲେ ଭଲ ହୁଅଇ ।

## ମାଳସ ରୋଗ ।

ଘୋଡ଼ାର କୌଣସିପ୍ରକାର ଅଘାତରୁ ମେରୁଦଣ୍ଡ ଫୁଲିଲେ ମାଳସ ରୋଗ ବୋଲି ଜାଣିବ । ଏଥିରୁ ଉପାୟ—ଲୁଣ, କଳାମାଟି,

ଅଙ୍କୁଲ୍‌ଟେର, ମୟୂରଚୂଳଆମୂଳ, ରକ୍ତଚନ୍ଦନ । ଏ ସମାନ କରି ଘଷି ଲେପିଲେ ମାଳସ ରୋଗ ଭଲ ହୁଅଇ ।

## ଛାଦୁକୁ ।

କଲରାପତ୍ର, କରାପତ୍ର, ତୁଳସୀପତ୍ର, ପାନଅଇରଟେର, ସୋମରାଜ ମଞ୍ଜି, ଠାଙ୍ଗଣା, କରଡ଼ା ଛେଳ, କାସର୍ଣ୍ଣି ଚେର । ଏ ସମସ୍ତଙ୍କୁ ସମାନ ଭାଗରେ ଛେଳି ମୂତରେ ବାଟି ଲେମ୍ବୁରସ ଢୋର ମିଶାଇ ଛାଦୁକୁଣ୍ଡାଇ ଔଷଧ ଲଗାଇଲେ ଭଲ ହୁଅଇ ।

## ବଶୁରବାଡ଼ିକ ।

ଘିଅରେ ଜାଉ ଗନ୍ଧକ ଏକ ମାତ୍ର, ବେଲଶୁଣ୍ଠୀ, ଅଳାଇଚ, ନାଗେଶ୍ୱର, ଇନ୍ଦ୍ରଜବ, ଅକାଳବନ୍ଧୁ ମୂଳ, ମୁଥା । ଏ ସମସ୍ତ ଏକ ନଉଷ ଲେଖାଏଁ ଚୂର୍ଣ୍ଣ କରି କଇଁଅପତ୍ର ରସ ଓ ଦହିରେ ଖୁଆଇଲେ ଭଲ ହୁଏ ।

## ଘୋଡ଼ାକୁ ଦୁଷ୍ଟ ଘାଉ ହେବାଇଲେ ।

ଔଷଧ ଲେପ—ଧନ୍ୱନ୍ତରପତ୍ର, ଅଧାଡ଼ାମଞ୍ଜି, ବେଣି ବଉଳମଞ୍ଜି, ମହାକାଳମୂଳ, ଅଙ୍କୁଲ୍‌ଟେର, ମୟୂରଚୂଳଅ, ଶୁଣ୍ଠି, ରକ୍ତଚନ୍ଦନ, ମରଚ । ଏହା ସମାନ ଭାଗରେ ବାଟି ଘା ମୁହଁରେ ଲେପ ଦେଲେ ସମସ୍ତ ଭଲ ହୁଅଇ ।

## ସ୍ତନହରା ପଦ୍ଧାପରା ।

ଘୋଡ଼ୀର ସ୍ତନ ଫୁଲିଲେ ସ୍ତନହରା ବୋଲି ଜାଣିବ । ଔଷଧ ଲେପ—ମୂଳଙ୍ଗାପତ୍ର, ରକ୍ତଚନ୍ଦନ, ମୟୂରଚୂଳଅ ମୂଳ, ଅଙ୍କୁଲ୍‌ଟେର, ଲୁଣ, ବଳାମାଟିକୁ ଅଣି ବାଟି ଲେପ ଦେଲେ ଫୁଲା ହ୍ରାସ ଅଦ ଭଲ ହୁଅଇ ।

## ଲୁମୂଣ୍ଡି ରୋଗ ।

ବେକଠାରୁ ନାଭି ପର୍ଯ୍ୟନ୍ତ ଯେବେ ଫୁଲକର ମନ୍ଥପରି ପଦ ଓହ୍ଲଇ, ତେବେ ବାଘୁଆ ଲୁମୂଣ୍ଡି ବୋଲି ଜାଣିବ । ପଶାରେ ଏପରି ଓହ୍ଲଇଲେ ଗଞ୍ଜା ଲୁମୂଣ୍ଡି ଡାକୁଅଛି, ହେଜରେ ଭାଃଅ ପରି ଓହ୍ଲଇଲେ ପାଣି ଲୁମୂଣ୍ଡି ବୋଲି ଜାଣିବ । ଏଥିର ପ୍ରୟୋଗ—ଅର୍କ ଚେର, ରକ୍ତଚନ୍ଦନ, ମୟୂରଚୂଳଅମୂଳ, ମୁଥାଣି, ଶୁଣ୍ଠି, ଅଙ୍କୁଲ ଚେର, ଲୁଣ; ବଳାମାଷ । ଏହା ବାଟି ଭାଜି ଲେପ ଦେଲେ ଲୁମୂଣ୍ଡି ରୋଗ ଭଲ ହୁଅଇ ।

## ଅତିସାର ।

ଯେଉଁ ଘୋଡ଼ାର ଗୁଲ ପରି, ଦୁଗ୍ଧ ପରି, ରକ୍ତ ପରି, ଜାମ୍ବୁକୋଳି ପରି, ବେସର ପରି, ଦହି ପରି ଚେକା ଚେକା ହୋଇ ବାହାରୁଥିବ; ପୋକ ମଧ ପଡ଼ୁଥିବ, ଦୁର୍ଗନ୍ଧ କରୁଥିବ, ସାଗଧୁଆ ପାଣିପରି, ମାଉଁସଧୁଆ ପାଣି ପରି ଦେଖା ଯାଉଥିବ, ଏପରି ହେଉଥିଲେ ଅତିସାର ରୋଗ ବୋଲି ଜାଣିବ । ଏଥିର ଉପାୟ—ଶୁଣ୍ଠି, ବଡ଼ଜାଇ, ଅଳାଇଚ, ଇନ୍ଦ୍ରଜବ, ସିଙ୍ଗଡ଼ା, ଅଜାଜବନ୍ଦୁ ଫଳ, ଲୁରୁବେଲି, ଜାଇଫଳ, ନାଗେଶ୍ୱର, ମୁଥାଣି, ରସୁଣ, ହଳଦ । ଏ ସମସ୍ତ ଏକ ପଲ ଲେଖାଏଁ ଗୁଣ୍ଡ କରି ମୂସାକାନି ରସରେ, ଜଦଳଭଣ୍ଡା ରସରେ ଖୁଆଇଲେ ଦେହ ଅଣ୍ଡା ଧରି ଭଲ ହୁଅଇ ।



PRINTED by V. Kar. The U. S. Press, Cuttack.